# ବିଚିତ୍ର ଜୀବଜନ୍ତୁ

ବିପିନବିହାରୀ ମିଶ୍ର



# ବିଚିତ୍ର ଜୀବଜନ୍ତୁ-୩

ଲେଖକ :
ବିପିନ ବିହାରୀ ମିଶ୍ର

ପ୍ରକାଶକ :
ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୨

ପ୍ରଥମ ସଂସ୍କରଣ : ୧୯୯୭

ପ୍ରଚ୍ଛଦ :
ବିଜୟ କୁମାର ପ୍ରଧାନ

ଡି.ଟି.ପି:
ଫ୍ୟୁଚର ଭିଜନ୍
କଟକ-୨

ମୁଦ୍ରଣ:
ଜଗନ୍ନାଥ ପ୍ରୋସେସ୍
କଟକ-୨

**ମୂଲ୍ୟ : ଟ୧୬**

କୁନୁମୁନି, ମାମି, ମାନିଆ
ମୁକୁଲ, ଅତୁଲ, ଟୁଟୁ, ମୁଟୁ ଓ ଲୁଟୁଙ୍କୁ...

ଲେଖକ

# ବିପିନ ବିହାରୀ ମିଶ୍ର

ଜନ୍ମ : ୧୯୪୫

ସ୍ଥାନ : ତାଳଚେର

**ସାହିତ୍ୟ କୃତି**

| | | |
|---|---|---|
| ତିର୍ଯ୍ୟକ୍ ଦୃଷ୍ଟି | (ରମ୍ୟରଚନା) | ୧୯୮୨ |
| ଶପଥ ସାତାଳର | (ଗଳ୍ପ) | ୧୯୮୩ |
| ଦାରୋଗା ସାହିତ୍ୟିକ | (ହାସ୍ୟଗଳ୍ପ) | ୧୯୮୪ |
| ମନର ମୁକୁର | (ଗଳ୍ପ) | ୧୯୮୫ |
| ସହରର ଉପକଣ୍ଠେ | (ଉପନ୍ୟାସ)(ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ) | ୧୯୯୩ |
| ଗୋମତୀର ଶେଷହଂସ | (ଗଳ୍ପ) | ୧୯୯୪ |
| ଅସଂପୂର୍ଣ୍ଣ ଝଙ୍କାର | (ଗଳ୍ପ) | ୧୯୯୪ |
| ସୁନନ୍ଦାର ଡାଏରୀ | (ଉପନ୍ୟାସ) | ୧୯୯୫ |
| ବହୁଦିନ ପରେ | (ଗଳ୍ପ) | ୧୯୯୬ |
| ସମୟର ସାରେଗାମା | (ଅଭିମତ) | ୧୯୯୬ |
| ଜନ୍ମମୃତ୍ୟୁ ଓ ଅନ୍ୟାନ୍ୟ ଗଳ୍ପ | (ଗଳ୍ପ) | ୧୯୯୬ |
| ହସର ଗୋଧୂଳି | (ବ୍ୟଙ୍ଗ ଗଳ୍ପ) | ୧୯୯୬ |
| ଧୂଳି ଜମିଥିବା ବହିଟିଏ | (ଗଳ୍ପ) | ୧୯୯୭ |

**ହିନ୍ଦୀରେ ଅନୂଦିତ**

| | |
|---|---|
| ଶପଥ ସାତଳକୀ | ୧୯୮୭ |
| ମନକୀ ଆଇନେ ମେ | ୧୯୯୧ |

**ତେଲୁଗୁରେ ଅନୂଦିତ**

| | |
|---|---|
| ବିପିନ୍ କଥାବଳି | ୧୯୯୪ |

**ଶିଶୁଗଳ୍ପ**

| | |
|---|---|
| ଗର୍ବରୁ ପରାଭାବ | ୧୯୯୬ |
| ବିଚିତ୍ର ଜୀବଜନ୍ତୁ-୧ | ୧୯୯୬ |
| ବିଚିତ୍ର ଜୀବଜନ୍ତୁ-୨ | ୧୯୯୭ |

**ସମ୍ମାନ**

| | | |
|---|---|---|
| ଦୈନିକ ଆଶା | (ଶ୍ରେଷ୍ଠ ପ୍ରାବନ୍ଧିକ) | ୧୯୮୩ |
| ଧରିତ୍ରୀ | (ଶ୍ରେଷ୍ଠ ଗାଳ୍ପିକ) | ୧୯୮୫ |
| ଫଲ୍‌ଗୁ | (ଶ୍ରେଷ୍ଠ ଗାଳ୍ପିକ) | ୧୯୮୬ |
| ଓଡ଼ିଶା ସାହିତ୍ୟଏକାଡ଼େମୀ | (ଶ୍ରେଷ୍ଠ ଔପନ୍ୟାସିକ) | ୧୯୯୪ |
| କବିଶେଖର ଚିନ୍ତାମଣି ସମ୍ମାନ | | ୧୯୯୭ |
| ବର୍ତ୍ତିକା ସମ୍ମାନ | | ୧୯୯୭ |

# ସୂଚିପତ୍ର

**ବିଷୟ** **ପୃଷ୍ଠା**





# ବରଫ ରାଜ୍ୟର ରାଜା

ପିଲେ ଭାଲୁ ତ ଦେଖିଚ, ସେସବୁ ଭାଲୁ ତୁଳନାରେ ଧଳାଭାଲୁ ବହୁତ ବଡ଼। ଏ ଭାଲୁର ଓଜନ ପ୍ରାୟ ଆଠଶହ କେଜି. ଅର୍ଥାତ୍ ବାରଟା ମଣିଷ ଓଜନ ସାଙ୍ଗେ ସମାନ। ତା ଦେହ ବେଶ୍ ଲମ୍ୱା, ମୁହଁଟା ସରୁ, ବେକ ଲମ୍ୱା, ହାତ ପତଳା। ଦୂରରୁ ଦିଶେ ମୋଟା ଜନ୍ତୁଟେ କିନ୍ତୁ ବରଫ ଉପରେ ସେ ଘଣ୍ଟାକୁ ପଚିଶି ମାଇଲ୍ ବେଗରେ ଧାଏଁ ଓ ପାଣିରେ ଛ' ମାଇଲ୍ ବେଗରେ ପହଁରିପାରେ ଓ ପନ୍ଦର ଫୁଟ



ପର୍ଯ୍ୟନ୍ତ ଡେଇଁପାରେ। ତୁନ୍ଦ୍ରା ଅଞ୍ଚଳର ଧଳାଭାଲୁର ଶକ୍ତି କେବଳ ଗରିଲା, ହାତୀ ଓ୍ୱାଲରସ୍ କିମ୍ୱା ଥଣ୍ଡା ଦେଶର ବ୍ରାଉନ୍ ଭାଲୁର ଶକ୍ତି ସଙ୍ଗେ ସମାନ। କିନ୍ତୁ ଏମାନଙ୍କଠୁଁ ଧଳାଭାଲୁର ବୁଦ୍ଧି ବେଶି। ଥରେ ତୁନ୍ଦ୍ରା ଅଞ୍ଚଳରେ ଦଳେ ଆଇଡାଲ୍ ହଂସ ଖଣ୍ଡେ ବରଫ ଉପରେ ବସିଥିଲେ, ତାଙ୍କୁ ବହୁଦୂରରୁ ଦେଖି ଧଳାଭାଲୁ ପାଣିରେ ଖୁବ୍ ଆସ୍ତେ ଆସ୍ତେ ପହଁରି ପହଁରି ପାଖକୁ ଚାଲିଆସିଲା। ପାଣି ଉପରେ କେବଳ ତା ନାକଟା ଜଣାପଡୁଥାଏ, ତା ମଧ୍ୟ ନେଳିଆ ପାଣିରୁ ବାରିବା କଷ୍ଟ। ହଠାତ୍ ଧଳାଭାଲୁ ବରଫ ଖଣ୍ଡ ପାଖରେ ପହଞ୍ଚିଲା ମାତ୍ରେ ଆଇଡାଲ୍‌ମାନେ ପାଣିକୁ ଡେଇଁ ପଡ଼ିଲେ କିନ୍ତୁ ଭାଲୁ ପାଣିରେ

ଡିଆଁମାରି ଗୋଟେ ହଂସକୁ ଧରିନେଲା । ଅଧିକାଂଶ ଜନ୍ତୁ ପାଣିରେ ପହଁରିବା ସମୟରେ ଗୋଡ଼କୁ ହଲେଇବା ପାଇଁ ବାଧ୍ୟ ହୁଅନ୍ତି ନହେଲେ ପହଁରି ପାରିବେ ନାହିଁ । ଧଳାଭାଲୁ ପାଣିରେ ସ୍ଥିର ହୋଇ ରହେ ଅଥଚ ଭାସେ, ତା'ର କାରଣ ହଉଚି ଧଳାଭାଲୁର ରୁମ ମୂଳରେ ପବନ ଥିବା ଯୋଗୁଁ ପାଣିରେ ବୁଡ଼ିବାରୁ ରକ୍ଷାକରେ । ତା'ଛଡ଼ା ତା ଚମରେ ତୈଳଗ୍ରନ୍ଥି ଥାଏ ଓ ସେଥିରୁ ତେଲ ବାହାରି ରୁମ୍ ଚିକ୍କଣ ରହେ । ଚମତଳେ ମୋଟା ବହଳର ଚ଼ର୍ବି ଥାଏ ଯେଉଁଥିପାଇଁ ଶୀତରୁ ରକ୍ଷା ମିଳେ ।

ତମେ ଜାଣିଥିବ ପିଲେ ତୁନ୍ଦ୍ରା ଅଞ୍ଚଳରେ ସବୁଆଡ଼େ ବରଫ ଓ ବରଫରେ ଖରା ପଡ଼ିଲେ ଏତେ ଚକ୍‌ଚକ କରିବ ଯେ ଖାଲି ଆଖିରେ ଦେଖୁଥିବା ଲୋକ ଅନ୍ଧ ହୋଇଯିବ । ତେଣୁ ତୁନ୍ଦ୍ରା ଅଞ୍ଚଳକୁ ଯାଉଥିବା ଲୋକମାନେ ମୋଟା ଓ କଳା କାଚର ଚଷମା ପିନ୍ଧନ୍ତି ।

ତାହେଲେ ଭାଲୁ ଅନ୍ଧ କିମିତି ହୁଏ ନାହିଁ ? —ପଚାରିଲେ ପୁପୁ ଇନି ।

ତା ଆଖିରେ ଗୋଟିଏ ମେମ୍ବ୍ରେନ ଅଛି, ଯାହାଦ୍ୱାରା ଆଖି ରକ୍ଷା ପାଇଯାଏ । ତା ଗୋଡ଼ ବେଶ୍ ଫର୍ଚ୍ଚା ଓ ପାଦତଳେ ରୁମ ଥାଏ ଯାହାକି ପହଁରିବାରେ ସାହାଯ୍ୟ କରେ ଓ ବରଫ ଉପରେ ଗୋଡ ସହଜରେ ଖସେ ନାହିଁ ।

ଧଳାଭାଲୁର ନଖ ସବୁବେଳେ ପଦାକୁ ବାହାରିଥାଏ, ବାଘ କିମ୍ୱା ବିଲେଇ ପରି ଚାହିଁଲେ ନଖ ଭିତରକୁ ସେ ନେଇ ପାରିବ ନାହିଁ କିନ୍ତୁ ତା ନଖ ତା'ର ବହୁତ କାମରେ ଆସେ । ନଖ ସାହାଯ୍ୟରେ ସେ ବରଫକୁ ଉଖାରି ବରଫ ତଳୁ ସିଲ୍‌ମାଛକୁ କାଢ଼ି ଆଣେ । ଦେହରେ ଆଘାତ ଲାଗିଲେ ଭୀଷଣ ଗର୍ଜନ କରେ କିନ୍ତୁ ଅଧିକାଂଶ ସମୟ ସେ ଏତେ ଚୁପ୍‌ଚାପ୍ ଥାଏ ଯେ ତା'ର ଉପସ୍ଥିତି ଜାଣିବା ଭାରି କଷ୍ଟ । ତା ବଳ ବିଷୟରେ ଜାଣିଲେ ଆଶ୍ଚର୍ଯ୍ୟ ଲାଗେ । ଧଳାଭାଲୁ ବରଫ

ଉପରେ ବସେ ଶିକାର ସଂଧାନରେ, ତା ଦେହ ଧଳା ଚକ୍‌ଚକ୍ ତେଣୁ ବରଫ ସାଙ୍ଗେ ମିଶିଯାଏ, କେବଳ ଅସୁବିଧା ହେଲା କଳା ମୁହଁଟା । ବରଫରେ କଳା ମୁହଁଟା ବାରି ହେଇଯିବ, ତେଣୁ ଭାଲୁ ମୁହଁଟାକୁ ଘୋଡ଼େଇ ରଖେ ଓ ସିଲ୍‌ମାଛ ପାଣିରୁ ମୁଣ୍ଡ ଟେକିଲା ମାତ୍ରେ ଗୋଟେ ହାତରେ ଅଢ଼େଇଶହ କେଜି ଓଜନର ସିଲ୍‌ମାଛକୁ ଟେକି ଆଣେ । ଖାଲି ବଳ କଥା ଛାଡ଼ ତା ଶୁଙ୍ଘିବା ଶକ୍ତି ମଧ୍ୟ ଜାଣିଲେ ତମେମାନେ ଆଶ୍ଚର୍ଯ୍ୟ ହେବ । ସିଲ୍‌ମାଛର ବାସନା ସେ ପନ୍ଦର କୋଡ଼ିଏ ମାଇଲ୍ ଦୂରରୁ ଜାଣିପାରେ ଓ ସେ ଅନୁସାରେ ସେ ପହଁରି ପହଁରି ଯାଏ । ଶିକାର ତଲାସରେ ପଚାଶ ପଚ଼ସ୍ତରି ମାଇଲ ବାଟ ଯିବାର ମଧ୍ୟ ନଜିର୍ ଅଛି । ସବୁବେଳେ ବିଚରା ଧଳାଭାଲୁକୁ ଧାଇଁବାକୁ ପଡ଼େ ଶିକାର ପାଇଁ । ତା'ର ଏଇ ଦୁର୍ବଳତାର ସୁଯୋଗ ନେଇ ଶିକାରୀମାନେ ସିଲ୍‌ମାଛର ଚର୍ବିକୁ ପୋଡ଼ନ୍ତି ଏବଂ ପବନରେ ଚର୍ବିର ଗନ୍ଧ ଦୂରକୁ ଭାସିଯାଏ ଓ ଧଳାଭାଲୁ ଗନ୍ଧ ବାରି ପହଁରି କିମ୍ବା ଚାଲି ଚାଲି ପଳେଇ ଆସେ ଶିକାରୀ ଦଳଙ୍କ ପାଖକୁ । ଭୋକିଲା ଥାଏ, ତେଣୁ ଆଗପଛ ନ ବିଚାରି ଶିକାରୀଙ୍କର ଅତି ପାଖକୁ ପଳେଇ ଆସେ ଓ ଶିକାରୀମାନଙ୍କୁ ଗୁଳିକରି ମାରିବା ପାଇଁ କିଛି ଅସୁବିଧା ହୁଏ ନାହିଁ ।

ଧଳାଭାଲୁର ଅଙ୍ଗଭଙ୍ଗୀ ଦେଖିଲେ ହସ ଲାଗିବ । ଶିକାର ପାଇଲେ ଖାଏ ଓ ଛୁଆଥିଲେ ଖୁଆଏ । ଖଣ୍ଡେ ଦୂରରେ ବେଢ଼ି ବସିଥାନ୍ତି ସିଗଲ ଚଢ଼େଇମାନେ, ଭାଲୁ ତାକୁ ଦେଖିଲେ ବିରକ୍ତ ହୁଏନାହିଁ । ଖାଇସାରି ଯାହା ବଳେ ତାକୁ ଛାଡ଼ିଦେଇ ଚାଲିଯାଏ । ସିଗଲ୍‌ମାନେ ଅଇଁଠା ମାଂସକୁ ଖୁମ୍ପିବା ପାଇଁ ଆସିବା ମାତ୍ରେ ଭାଲୁ କିଛିବାଟ ଗୋଡେଇ ଆସି ଘଉଡ଼େଇ ଦିଏ ଓ ପୁଣି ନିଜ ସ୍ଥାନକୁ ଫେରିଯାଏ । ଇମିତି କବାଡ଼ି ଖେଳ କିଛି ସମୟ ଚାଲେ ଓ ସନ୍ତୁଷ୍ଟ ହୋଇ ଭାଲୁ ଫେରିଯାଏ ।

ପୁଣି ସମୁଦ୍ରରେ ଚିଙ୍ଗୁଡ଼ି ଭଳିଆ ଛୋଟ ଛୋଟ ଜୀବ ଥାଆନ୍ତି ଯାହା ନାଁ ହେଉଛି କ୍ରିଲ୍ । କ୍ରିଲ୍‌କୁ ମାଛମାନେ ଖାଆନ୍ତି, ମାଛମାନଙ୍କର କ୍ରିଲ୍ ହେଲା ମୂଳଖାଦ୍ୟ, ସିଲ୍‌ମାନେ ଏହି ମାଛକୁ ଖାଆନ୍ତି । ଶୀତଦିନେ ସମୁଦ୍ର ଉପରେ ବରଫ ଜମାଟ ବାନ୍ଧିଥାଏ ଓ ସିଲ୍ ବରଫ ଫାଟ ଜାଗାଦେଖି ମୁଣ୍ଡଟେକେ ନିଃଶ୍ୱାସ ନବା ପାଇଁ । ଏଇଭଳିଆ ଫାଟ ଜାଗା ଦେଖି ଧଳାଭାଲୁ ଛପିଥାଏ । ପତଳା ବରଫ ଭିତରେ ଚାଲିଲେ ତ ପଡ଼ିଯିବ ସମୁଦ୍ର ଭିତରେ, ତେଣୁ ମଜଭୁତ୍ ବରଫ ଆସ୍ତରଣ ଦେଖି ଫାଟ ପାଖରେ ଶୋଇଲା ପୋଜିସନ୍‌ରେ ଛପିଥାଏ । ଯଦି ସିଲ୍‌ମାଛ ଆସିଲା ଫଟ୍‌କରି ତା ମୁଣ୍ଡଟାକୁ ଧରି ଟାଣିଆଣେ ଓ



ମାରିଦିଏ । ବେଳେ ବେଳେ ସିଲ୍‌ମାଛକୁ ବରଫ ଖଣ୍ଡ ଉପରେ ଆସିବା ସେ ଦେଖେ । ପାଣି ଭିତରେ ଆସ୍ତେ ଆସ୍ତେ ପହଁରି ସିଲ୍‌ମାଛ ଡେଇଁଲା ବେଳକୁ ଗୋଟାକୁ ଧରି ପକାଏ ।

ଏସ୍କିମୋମାନଙ୍କର ରହିବା ଘରକୁ ଇଗ୍ଲୁ କହନ୍ତି । ଏସ୍କିମୋମାନେ ବରଫରେ ଅର୍ଦ୍ଧ ଗୋଲାକାର ଆକୃତିର ଘର କରି ଭିତରେ ଶୁଅନ୍ତି ଓ ବାହାରେ ଜଗନ୍ତି ସେମାନଙ୍କ କୁକୁର ସାଧାରଣତଃ ହସ୍କି ଜାତିର । ଧଳାଭାଲୁ ଯଦି ଇଗ୍ଲୁ ପାଖକୁ ପଳେଇ ଆସିଲା ହସ୍କି ଛାଡ଼ିବେ ନାହିଁ । ଦଳେ ହସ୍କିଙ୍କୁ ଦେଖିଲେ ଧଳାଭାଲୁ ଫେରିଯାଏ ବିରକ୍ତ ହୋଇ । ଶିକାର ହାତରୁ ଖସିଗଲେ ବିରକ୍ତ ହୋଇ ବରଫରେ ଆମ୍ପୁଡିବା ନଚେତ୍ ଗୋଲ୍ ଗୋଲ୍ ବରଫ ଧରି ଛୁଆମାନେ ରାଗରେ କଣ୍ଢେଇ ଫୋପାଡ଼ିଲା ଭଳି, ଫୋପାଡ଼ିବାର ଦୃଷ୍ଟାନ୍ତ ଅଛି ।

ତା'ଛଡ଼ା ସେ ଡରେ ତିମି ମାଛକୁ । ତିମିମାଛ ପହଁରୁଥିବା ଧଳାଭାଲୁକୁ ଖାଇଦିଏ । ୱାଲରସ୍ ମଧ୍ୟ ଧଳାଭାଲୁକୁ ଆକ୍ରମଣ କଲେ । ୱାଲରସ୍‌ର ଓଜନ ଧଳାଭାଲୁଠୁଁ ତିନିଗୁଣରୁ ବେଶି, ତା ଚମଡା ଭାରି ଶକ୍ତ ଓ ସେ ଭାଲୁଠୁଁ ବେଶି ବେଗରେ ପହଁରି ପାରେ, ତେଣୁ ପାଣିଭିତରେ ଭାଲୁକୁ ପାଇଲେ ତାକୁ ଧରି ବୁଡ଼େଇ ଦିଏ । ଧଳାଭାଲୁ ସ୍ଥଳ ଜାଗାରେ ପ୍ରତିଶୋଧ ନିଏ । ଥରେ ଗୋଟେ ବଡ଼ ୱାଲରସ୍ ଶୋଇଥିଲା, ଭାଲୁ ଚୁପ୍‌ଚାପ୍ ଅତି ପାଖକୁ ଗଲା ଓ ଗୋଟେ ମଜଭୁତ ବରଫ ଖଣ୍ଡ ଧରି ୱାଲରସ୍ ମୁଣ୍ଡରେ ପିଟି ତାକୁ ମାରିଦେଲା ।

ମାଈଭାଲୁ ପାଞ୍ଚବର୍ଷ ବୟସ ପାର ହେଲାପରେ ମା' ହୁଏ । ଜାନୁଆରୀ ମାସ ଆଡକୁ ସେ ବରଫରେ ଲମ୍ବା ସୁଡ଼ଙ୍ଗ ଖୋଳେ ଓ ଛୁଆ ଦିଏ । ଛୁଆମାନଙ୍କୁ ସେ ଏପ୍ରିଲ୍ ମାସ ପର୍ଯ୍ୟନ୍ତ ଜାବୁଡ଼ି କରି ରଖେ ଯାହାଦ୍ୱାରା ସେମାନେ ଉଷୁମ ପାଆନ୍ତି ଓ ମଝିରେ ମଝିରେ ବାହାରୁ ଖାଇବା ଆଣି ତାକୁ ଦିଏ । ଦୁଇବର୍ଷ ପର୍ଯ୍ୟନ୍ତ ମାଈଭାଲୁ ଛୁଆଙ୍କୁ ରଖେ, ତାଙ୍କୁ ଶିକାର କରିବା ଶିଖାଏ ଓ ଛୁଆମାନେ ସକ୍ଷମ ହେଲା ପର୍ଯ୍ୟନ୍ତ କୌଣସି ପୁରୁଷ ଭାଲୁକୁ ପାଖରେ ପୂରାଏ ନାହିଁ ।

ଚିଡ଼ିଆଖାନାରେ ଧଳାଭାଲୁ ବେଶି ସମସ୍ୟା ସୃଷ୍ଟି କରେ ନାହିଁ ବରଂ ଲୋକଙ୍କୁ ଦେଖିଲେ ଧାଁଧପଡ଼ କରି ଭୂଇଁରେ ଗଡ଼ି ଖୁସି କରିବା ପାଇଁ ଚେଷ୍ଟାକରେ । ଛୋଟ ପୋଖରୀଟିଏ କରିଦେଇ ଉଚ୍ଚା ଜାଗାରେ ବୋର୍ଡର ବ୍ୟବସ୍ଥା କଲେ ସେ ପାଣିକୁ ଡାଇଭ୍ ମାରିବା ପାଇଁ ଭଲ ପାଏ ଯେତେବେଳେ ବେଶି ଲୋକ ଥାଆନ୍ତି । ଏଭଳି ସୁନ୍ଦର ଜୀବକୁ ଆଖି ବୁଜି ଗୁଳିକରି ମାରି ଦିଆ ହଉଚି ତା'ର ଚମଡା ଲୋଭରେ । ବିଚରା ଧଳାଭାଲୁକୁ ରକ୍ଷା ନକଲେ କେତେବର୍ଷ ପରେ ସେ ନିଶ୍ଚିହ୍ନ ହେଇଯିବ ।



# ଷାଠିଏ ହଜାର ଆଖି

ପୁପୁ ଇନିଙ୍କ ବଗିଚାରେ ଅନେକ ଫୁଲଗଛ, ଅକ୍ଟୋବର ମାସ ନ ହଉଣୁ ରଙ୍ଗବେରଙ୍ଗର କଙ୍କି, ଗଛ ଉପରେ ବସିଲେ । ପୁପୁ ଗଲା ଆସ୍ତେ ଆସ୍ତେ କଙ୍କିଟିଏ ଧରିବା ପାଇଁ ଓ ପଛ ଆଡୁ ଧରିବା ପାଇଁ ଯାଉଚି ଚଟକରି କଙ୍କିଟି ଉଡ଼ିଗଲା । ତାପରେ ଆଉଗୋଟେ—ତାପରେ ଆଉଗୋଟେ, ଯେତେଥର କଙ୍କି ଧରିବା ପାଇଁ ଚେଷ୍ଟାକଲା ଧରି ପାରିଲା ନାହିଁ । ବାରଣ୍ଡାରେ ଠିଆ ହୋଇ ବାପା ଦେଖୁଥିଲେ, ହସି ହସି କହିଲେ—କଙ୍କି ଧରିବା ଏତେ ସହଜ କଥା ନୁହେଁ, ତା'ର ଷାଠିଏ ହଜାର ଆଖି । ଚକିତ ହୋଇ ପୁପୁ ବାପାଙ୍କ ମୁହଁକୁ ଅନେଇଲା ଓ କହିଲା—ଷାଠିଏ ହଜାର ଆଖି ?

ହଁ, ତା'ର ଯୋଡ ଦୁଇ ବଡ଼ବଡ଼ ଆଖି ଦେଖୁଚୁ ପ୍ରତ୍ୟେକ ବଡ଼ ଆଖିରେ ଛୋଟଛୋଟ ଆଖି ତିରିଶି ହଜାର ଲେଖାଏଁ । ତା ଆଖି ଦି'ଟା ମୁଣ୍ଡ ଉପରକୁ ଠୁବା ହୋଇ କରି ଥାଏ ଓ ମୁଣ୍ଡ ବୁଲିବା ସାଙ୍ଗରେ ଆଖି ସବୁ ଆଡ଼କୁ ଦେଖୁଥାଏ । ଆଗପଛ ତଳଉପର ସବୁଆଡେ ଏକାସାଙ୍ଗେ ସେ ଦେଖିପାରେ । ଏତେ ଛୋଟ ପୋକଟିଏ ଅଥଚ ତା'ର ଏଇ ସ୍ୱତନ୍ତ୍ର ଆଖି ଯୋଗୁଁ ଶହେ ତିରିଶି ଫୁଟ ଦୂରରୁ ଉଡ଼ିଯାଉଥିବା ଛୋଟ ମାଛି ମଶା ଅନ୍ୟାନ୍ୟ ପୋକଙ୍କୁ ସେ ଦେଖିପାରେ । ପୁଣି ଆଖିର ଉପର ଅଂଶଟା ଦୂରରୁ ଥିବା ପୋକମାନଙ୍କର ଚଳପ୍ରଚଳ ଜାଣିପାରେ ଓ ତଳ ଅଂଶଟା ତା'ର ଆକୃତି ଭଲଭାବେ ଜଣାଏ । ତେଣୁ ଯେତେବେଳେ ପୋକଟିଏ କଙ୍କିଦେଖେ ସେ ଉଡ଼ି ଶିକାରର ଉପରକୁ ଚାଲିଯାଏ ଓ ତଳ ଆଖିରେ

ଶିକାରକୁ ଭଲ ଭାବରେ ଦେଖି ତାକୁ ଧରିବାରେ ଅସୁବିଧା ହୁଏ ନାହିଁ। କଙ୍କି ଆକାଶରେ ଘଣ୍ଟାକୁ ପଚାଶ କିଲୋମିଟର ଗତିରେ ଉଡିପାରେ। ଉଡୁଥିବା ପକ୍ଷୀ କିମ୍ବା ପ୍ଲେନ ରହିବାକୁ ହେଲେ ସ୍ପିଡ୍ କମେଇ କମେଇ ରହନ୍ତି କିନ୍ତୁ ଚାରିଟା ଡେଣାଥିବାରୁ କଙ୍କି ହାଇସ୍ପିଡ୍‌ରୁ ଷ୍ଟପ୍ ହେଇଯାଏ। ପୁଣି ଚାହିଁଲେ ୯୦° କୋଣରେ ବୁଲିପଡେ ଓ ହମିଙ୍ଗ୍ ବାର୍ଡ ଭଳିଆ ପଛୁଆ ଉଡ଼ିଆସେ।

ଶିକାର ଦୃଷ୍ଟିରୁ କଙ୍କି ଦୁଇ ପ୍ରକାର, ଦଳେ କଙ୍କି ଉଡ଼ିବା ଅବସ୍ଥାରେ ଶିକାର ସଂଧାନ କରନ୍ତି। ଫୁଲଗଛ ଇତ୍ୟାଦି ଦେଖି



ସେମାନେ ଆକାଶରେ ପଇଁତରା ମାରନ୍ତି ଓ ପୋକ ମଶା ମାଛି ଦେଖିଲେ ଝାମ୍ପ ମାରନ୍ତି। ଆଉଦଳେ ଡାଳ, ପଥର, କାନ୍ଥ ଉପରେ ବସିଥାନ୍ତି ଓ ଉଡ଼ିଯାଉଥିବା ଶିକାରକୁ ଆକ୍ରମଣ କରନ୍ତି। ପ୍ରଥମ ଜାତୀୟ କଙ୍କିକୁ ହକର୍ ଓ ଦ୍ୱିତୀୟ ଜାତୀୟ କଙ୍କିକୁ ଡାଟର୍ କହନ୍ତି। ହକର୍ କଙ୍କି ଗୋଟେ ଚାଲାକ କାମ କରେ, ସେ ଚାଲୁଥିବା ଜନ୍ତୁମାନଙ୍କ ପିଛା କରେ। ଗାଈ, ମଇଁଷି, ହରିଣ ଚାଲିବା ସମୟରେ ଘାସ ତଳେ ଲୁଚିଥିବା ଅନେକ ପୋକ ଉଡନ୍ତି ଓ ସେ କଙ୍କି ତାକୁ

ଧରିନିଏ । ତାଟର୍ କଙ୍କି ଗଛଡାଳ, ପଥର ଉପରେ ବସେ ଶିକାର ଅପେକ୍ଷାରେ ଓ ଗରମ ହେଲେ ଉଚ୍ଚ ଡାଳକୁ ଉଡ଼ିଯାଏ । ବେଶି ଗରମ ହେଲେ ଚାରିଟା ଡେଣାରୁ ଦୁଇଟା ଡେଣା ତଳ ଆଡକୁ ବୁଝିଦେଇ ପେଟ ଓ ଛାତିକୁ ଗରମରୁ ରକ୍ଷା କରେ ।

ତା'ର ଶିକାର କରିବା ମଧ୍ୟ ବଡ଼ ବିଚିତ୍ର । ଶିକାରକୁ ପ୍ରଥମେ ପାଟିରେ ଧରିଲା ପରେ ତା ଦେହରେ ବିଷ ଛାଡ଼ିଦିଏ ଓ ଉଠେଇ ନିଏ । ସବୁବେଳେ କଙ୍କି ଖାଇବା ସଂଧାନରେ ରହେ କାରଣ ବହୁ ସମୟ ଉଡ଼ିବା ଦ୍ୱାରା ତାର ଖାଇବା ବହୁତ ଦରକାର୍ ପଡ଼େ । ତା' ଛଡ଼ା ଖାଇବା ତ ସବୁବେଳେ ମିଳିବ ନାହିଁ । ତେଣୁ ଯେତେବେଳେ ଯାହା ମିଳିଲା କଙ୍କି ପେଟପୂରା ଖାଇଦିଏ ।

କଙ୍କି ଜନ୍ମ ହୁଏ କୋଉଠେ—ପଚାରିଲେ ପୁପୁ ଇନି ।

କଙ୍କିର ଜନ୍ମ କାହାଣୀ ଆହୁରି ବିଚିତ୍ର । ମା କଙ୍କି ଅଣ୍ଡାଦିଏ ପାଣି ଭିତରେ । ଅଣ୍ଡାରୁ ଛୁଆ ହୁଏ, ଛୁଆ କଙ୍କି ପାଣି ଭିତରେ ରହେ ଛ' ବର୍ଷ ପର୍ଯ୍ୟନ୍ତ, ସେତେବେଳେ ତା'ର ଡେଣା ନଥାଏ, ଆଖି ଏତେ ବଡ଼ ହେଇନଥାଏ, ଗୋଡ଼ ଖୁବ୍ ସାନ ସାନ ହେଇଥାଏ । ପାଣିର ମାଟିତଳେ ଲୁଚି କଙ୍କି ରହେ ଓ ଶିକାରକୁ ଅପେକ୍ଷା କରେ । ତାର ପାଟିକୁ ଲାଗି ଚମର ଗୋଟେ ମୁଖା ଥାଏ । ମୁଖାଟା ପାଟିକୁ ଘୋଡ଼େଇ କରି ଥାଏ ଓ ତା ଭିତରେ ଦି'ଟା ହୁକ ଭଳିଆ ଟାଣ ଦାନ୍ତ ଥାଏ । ମାଟି ତଳେ ଲୁଚି ରହି କେବଳ ମୁଣ୍ଡ ସାମାନ୍ୟ ଉପରକୁ ଓ ଆଖି ଦି'ଟି ଚାରିଆଡ଼େ ବୁଲଉଥାଏ ଶିକାରକୁ ଅପେକ୍ଷା କରି । ଶିକାର ପାଖକୁ ଆସିଲା ମାତ୍ରେ କଙ୍କି ବାହାରିଆସେ ମାଟିତଳୁ ଓ ଡେଇଁପଡ଼ି ତା ତଳ ଓଠକୁ ଢାଏ କରି ପିଟିଦିଏ ଶିକାର ଦେହରେ । ତଳ ଓଠ ସାଙ୍ଗେ ଦି'ଟା ଦାନ୍ତ ବି ବାଜେ ବିଚରା ଶିକାର ଦେହରେ । ଦାନ୍ତଟା ଏତେ ଜୋର୍‌ସେ ବାଜେ ଯେ ତମେ ଜାଣିଲେ ଆଶ୍ଚର୍ଯ୍ୟ ହବ ଗୋଟେ ସେକେଣ୍ଡର ତିନି ଶହ ଭାଗରୁ ଭାଗେ ସମୟରେ ମୁଖା ଓ ଦାନ୍ତ

ଶିକାର ଦେହରେ ବାଜିବାରୁ ତା ଦେହ ଚିରି ହୋଇଯାଏ, ତାପରେ ତାକୁ ଧରି ଗୋଟାପଣେ ଖାଇଯାଏ । ବେଳେ ବେଳେ ମାତ୍ର ଖାଇ



ମଧ୍ୟ ଶିକାର ନମଲେ କଙ୍କି ତା ପେଟକୁ ଚିରି ପକାଏ । ନିଜଠାରୁ ସାଇଜ୍‌ରେ ବଡ଼ ଓ ଚାରିପାଞ୍ଚ ଗୁଣା ଓଜନର ଶିକାରକୁ କଙ୍କି ମାରିପାରେ ଓ ଥରେ ଖାଇଲା ପରେ ଦୁଇ ତିନିମାସ ପର୍ଯ୍ୟନ୍ତ ସେ ଆରାମରେ ମାଟିତଳେ ଶୋଇଯାଏ । ଛ' ବର୍ଷ ପାଖାପାଖି ହେଲେ ପାଣିରୁ ବାହାରେ ପଦାକୁ, ସେ ସମୟରେ ତା ଆଖି ବଡ଼ ହୋଇଯାଇଥାଏ, ମୁଖାଟା ବଡ଼ ମୁହଁ ଆକାରର ହୋଇଯାଏ, ପିଠିରେ ଡେଣା ଗଜୁରେ, ପେଟ ବଡ ହୁଏ ନିଃଶ୍ୱାସ ନବା ପ୍ରଣାଳୀ ବଦଳି ଯାଏ । କଙ୍କି ପାଣିତଳେ ଗିଲ ସାହାଯ୍ୟରେ ନିଃଶ୍ୱାସ ନିଏ, ମାଟିକୁ ଆସିଲେ ଗିଲ୍ ଦରକାର ପଡେନାହିଁ ।

ରାତିବେଳା ଦେଖି ସେ ପାଣିରୁ ପଦାକୁ ବାହାରେ ଓ ଯେଉଁଠେ ଦିନବେଳା ଖରା ନ ପଡ଼ିବ ସେଭଳି ଜାଗା ବାଛେ । କିମିତି ଜାଣିପାରେ କେଜାଣି ? ପାଣିରୁ ମାଟିକୁ ଆସିବା ପରେ ଦଶ ମିନିଟ୍ ପର୍ଯ୍ୟନ୍ତ ସ୍ଥିର ହେଇ ବସେ ଓ ଦେହରୁ ଚମ ଝଡ଼ି ଚାରିଟା ପର ବାହାରେ । ଘଣ୍ଟେ ମଧ୍ୟରେ କଙ୍କିର ସଂପୂର୍ଣ୍ଣ ପରିବର୍ତ୍ତନ ହେଇଯାଏ । ପାଣି ଭିତରେ ରହିବା ଦ୍ୱାରା ତା ଦେହର ତାପମାନ କମ୍ ଥାଏ ତେଣୁ ତାକୁ ବଢ଼େଇବା ପାଇଁ କଙ୍କି ଡେଣାକୁ ବାରମ୍ବାର ଝାଡେ ଓ ଦେହର ତାପମାନ ବଢ଼ିଲା ପରେ ଉଡ଼ିଯାଏ ।

ପାଣି ତଳେ ସେ ରହେ ଛ'ବର୍ଷ, ପାଣି ଉପରେ ରହେ ଛ', ସାତ ସପ୍ତାହ । ମରିବା ପୂର୍ବରୁ ମାଈ କଙ୍କି ଅଣ୍ଡାଦିଏ ପାଣି ଭିତରେ । ନଈରୁ ବାହାରିଥିବା କଙ୍କି ନଈରେ ଓ ପୋଖରୀରୁ ବାହାରିଥିବା କଙ୍କି ପୋଖରୀରେ ଅଣ୍ଡା ଦିଅନ୍ତି । କେବଳ ଏସ୍‌ନା ଗ୍ରାଣ୍ଡିସ୍ ନାମକ ଏକ ପ୍ରକାର କଙ୍କି ପାଣି ଭିତରେ ଥିବା କଞ୍ଚା ଡାଳକୁ କଣା କରି ସେଇଥିରେ ଅଣ୍ଡା ଦିଅନ୍ତି ।

ବାପ୍‌ରେ ବାପ୍ ଦେଖିବାକୁ ଏତେ ସୁନ୍ଦର କିନ୍ତୁ ଏତେ ଭୟଙ୍କର—କହିଲା ପୁପୁ ।

ଭୟଙ୍କର ଆମ ପାଇଁ ନୁହେଁ—କହିଲେ ବାପା । ଆମର ବହୁତ ଉପକାର କରେ କଙ୍କି । ପାଣି ଭିତରେ ମଶାଛୁଆ ଓ ପାଣି ବାହାରେ ମଶା ମାଛିକୁ ନିୟମିତ ଭାବେ ମାରେ ସେ । ତେବେ କହିଲ ପିଲେ କଙ୍କି ଆମର ମିତ୍ର ନା ଶତ୍ରୁ ?

❑❑

# ବିଳସେ ଶାଖାରେ ଦେଖ

ଆଫ୍ରିକା ଜଙ୍ଗଲରେ ବୁଦୁବୁଦିଆ ଗଛ, ବଡ଼ ବଡ଼ ପଥର, ତହିଁ ଉପରେ ବସିଥାନ୍ତି ପାଞ୍ଚୋଟି ମ୍ୟାନଡ୍ରିଲ୍। ମ୍ୟାନଡ୍ରିଲ୍ ବବୁନ ଜାତୀୟ ମାଙ୍କଡ଼। ଏତିକି ତଫାତ୍ ଯେ ମ୍ୟାନ୍ଡ୍ରିଲର ନାକଟା ଲାଲ, ଓଠ ଲାଲ ଓ ନାକ ଦିପାଖେ ନେଳିଆ ନେଳିଆ ଗାର। ବବୁନ୍‌ଠୁଁ ମ୍ୟାନଡ୍ରିଲ୍ ଦେଖିବାପାଇଁ ସୁନ୍ଦର। ପରସ୍ପର ପିଠି କୁଣ୍ଡଉଥାନ୍ତି ଓ ପିଠି କୁଣ୍ଡେଇବାରେ ଏତେବ୍ୟସ୍ତ ଥାଆନ୍ତି ଯେ କଲରାପତରିଆ ବାଘଟେ କେତେବେଳେ ଛପି ଛପି ଆସି ପାଖରେ ପହଞ୍ଚି ଗଲାଣି ଜାଣିନାହାଁନ୍ତି। ହଠାତ୍ ଗୋଟେ ମ୍ୟାନ୍ଡ୍ରିଲ୍ କଲରାପତରିଆ ବାଘକୁ ଦେଖିଦେଲା, ସାଙ୍ଗେ ସାଙ୍ଗେ ତା ଲୋମ ଟାଙ୍କୁରି ଉଠିଲା, ପାଟି ମେଲା କରି ସେ ଦାନ୍ତ ଦେଖେଇଲା ଓ ଭୁସ୍‌କରି ଗୋଡ଼େଇ ଗଲା କଲରାପତରିଆ ବାଘକୁ। ତା ସାଙ୍ଗେ ସାଙ୍ଗେ ବାକି ମାଙ୍କଡ଼ମାନେ ଦୌଡ଼ି ଆସି ବାଘକୁ ଘେରିଗଲେ, ବିଚରା ବାଘ ଜାଣିଲା ଆଉ ରକ୍ଷା ନାହିଁ, ସାଙ୍ଗେ ସାଙ୍ଗେ କୁଦାମାରି ଦୌଡ଼ିଗଲା ଦୁଇଶହ ଗଜ ଓ ପଛକୁ ଅନେଇଲା ମାଙ୍କଡ଼ମାନେ ପିଛା କରୁଚନ୍ତି ନା ନାହିଁ—ଓହୋ, ପ୍ରାଣଟା ବଂଚିଗଲା। ଏଣେ ମ୍ୟାନ୍ଡ୍ରିଲ୍‌ମାନଙ୍କ ରାଗ ଥମି ନଥାଏ, ସେମାନେ ମିଳିମିଶି ଖେଁ ଖେଁ କରୁଥାନ୍ତି ଓ ଜଣେ ଟେକା ଭୂଇଁକୁ ମାରୁଥାଏ।

ମାଙ୍କଡ଼ମାନଙ୍କର ଖାଇବା, ସାଙ୍ଗହବା, ରାଗିବା, ଖୁସିହବା ଖେଳିବା ସବୁ ଦେଖିବା କଥା। ସିମ୍ପାଞ୍ଜିମାନେ ଦଳ ହୋଇ ବସିଥାନ୍ତି ହଠାତ୍ ବୋବେଇବା ଅଭ୍ୟାସ କରନ୍ତି। ବିଭିନ୍ନ ପ୍ରକାର ବୋବେଇବା ଅଭ୍ୟାସ ସେମାନଙ୍କର ଦରକାର। ରାଗିବା, ଖୁସିହବା, ଧମକେଇବା,

ସତର୍କ କରିବା, ଛୋଟ ମାଙ୍କଡ଼କୁ ଗାଳିଦବା ପାଇଁ ବିଭିନ୍ନ ପ୍ରକାରର ସ୍ୱର ଦରକାର। ସିପାଞ୍ଜି ଡିମା ଡିମା ଆଖି କରି ଅନାଏ, ଦାନ୍ତ ଚିପିଦିଏ, ମୁହଁ ଫଣ ଫଣାଏ ଯଦି ଆକ୍ରମଣର ଆଶଙ୍କା ଥାଏ। ପିଲା ସିପାଞ୍ଜି ବଡ଼ମାନଙ୍କର ଦୃଷ୍ଟି ପାଇବା ପାଇଁ ଆଖି ଅଧା ମେଲାକରି ଓଠଦିଟା ଲମ୍ବେଇ ଦେଇ କୁଁ କୁଁ ଶବ୍ଦ କରେ। ଭୟ ଲାଗିଲେ ସିପାଞ୍ଜି



ଆଖି ପୂରାପୂରି ମେଲା କରି ଆଖିପତା ଉପରକୁ ଟେକି ସ୍ଥିର ଦୃଷ୍ଟିରେ ଅନାଏ। ହମଡ୍ରାୟସ୍ ମାଙ୍କଡ଼ ଆକ୍ରମଣ କରିବା ପାଇଁ ଚାହିଁଲେ ଆଖି ମିଟିମିଟି କରି ବିରାଟ ଆଁ କରି ବଡ଼ ବଡ଼ ଦାନ୍ତ ଦେଖାଏ। ସାଉଥ୍ ଆମେରିକାରେ ରହୁଥିବା ଓଉଆକାରି ଜଙ୍ଗଲରେ ଆଗନ୍ତୁକକୁ ଦେଖିଲେ ତା ମୁହଁ ଲାଲ ପଡ଼ିଯାଏ।

ଛୁଆଙ୍କୁ ପାଳିବାରେ ମଧ୍ୟ ବିଭିନ୍ନ ଢଙ୍ଗ ସେମାନେ ଦେଖାନ୍ତି। ଆଫ୍ରିକାରେ ରହୁଥିବା ଚ଼କ୍ମା ବବୁନ ମାଙ୍କଡ଼ ବେଶ୍ ବଡ଼, ଦେହର ରଂଗ ସୁନେଲି। ମା ଯେତେବେଳେ କୋଳରେ ଛୁଆକୁ ବସାଏ ଅନ୍ୟ

ମାଙ୍କଡମାନେ ଚାହାଁନ୍ତି ତାକୁ ଗେଲ କରିବା ପାଇଁ କିନ୍ତୁ ମା ମାଙ୍କଡ଼ ସେ ସୁଯୋଗ ସମସ୍ତଙ୍କୁ ଦିଏ ନାହିଁ । ତାର ଅତି ପ୍ରିୟ ମାଙ୍କଡ଼ କିମ୍ବା ମାଙ୍କିଡ଼ି ଆସନ୍ତି ଆଉଁସିବା ପାଇଁ । ପ୍ରଥମେ ଟିକିଏ ଦୂରରେ ବସି ହାତ ଲମ୍ବାନ୍ତି, ମା ହାତଟାକୁ ଏଂଡ଼େଇ ଦେଲେ ଫେରିଯାଆନ୍ତି । ଅନୁମତି ଦେଲେ ଛୁଆ ଦେହରେ ହାତ ମାରିବେ ପୁଣି ଯେତେବେଳେ ମା ଚାହେଁ ଯେ ଯଥେଷ୍ଟ ହୋଇଗଲା ସାମାନ୍ୟ ଠେଲିଦିଏ ଓ ଗେଲ କରୁଥିବା ମାଙ୍କଡ଼ ପଳେଇ ଯାଏ । ଗେଲାଡା ବବୁନ୍ ବୋଲି ଆଉ ଏକ ମାଙ୍କଡ଼ । ପୁରୁଷ ମାଙ୍କଡ଼ ସ୍ତ୍ରୀ ମାଙ୍କଡ଼ର ଦେହ ମୁଣ୍ଡ ଆଉଁସି ଦିଏ, ଏଇ ସୁଯୋଗ ସବୁ ପୁରୁଷ କି ସ୍ତ୍ରୀ ମାଙ୍କଡକୁ ମିଳେ ନାହିଁ, କେବଳ ନିଜ ସ୍ତରର ମାଙ୍କଡ଼ ମାଙ୍କିଡ଼ିଙ୍କୁ ମିଳେ । ସେଇଥିପାଇଁ ଝଗଡ଼ା ହେଲେ ଲଢ଼େଇ ପର୍ଯ୍ୟନ୍ତ କଥା ଯାଏ ଓ ଚ଼କମା ବବୁନଙ୍କ ମଧ୍ୟରେ ନିୟମ ଏଇଆ ଯେ ଦୁର୍ବଳ ମାଙ୍କଡ଼ ସବଳ ମାଙ୍କଡ଼ଠୁଁ ହାରମାନେ, ମୁଣ୍ଡକୁ ତଳକୁ କରି ବୁଲି ପଡେ ଓ ପଛକୁ ଅନାଏ ।

ସିମ୍ପାଞ୍ଜିମାନେ ମଧ୍ୟ ଏଇଭଳି ନିୟମ ପାଳନ୍ତି । ସେମାନଙ୍କ ମଧ୍ୟରେ ମଧ୍ୟ ଦାଦାଗିରି ଚାଲେ । ନିଜକୁ ବଡ଼ ମନେ କରିଥିବା ବଲୁଆ ସିଂପାଞ୍ଜି ସାଙ୍ଗରେ ଦୋସ୍ତି କରିବା ପାଇଁ ଆଉ ଗୋଟିଏ ସିଂପାଞ୍ଜି ଆସିଲା କିନ୍ତୁ ଜାଣେ ନାହିଁ ବଲୁଆ ସିଂପାଞ୍ଜି କୋଉଭଳି ତାକୁ ଗ୍ରହଣ କରିବ । ତା ମନ ବିଡ଼ିବା ପାଇଁ ସେ ବଲୁଆ ସାମନାକୁ ଯାଇ ହଠାତ୍ ଘୂରି ପଡ଼ିଲା, ଠୁଙ୍କାହୋଇ ବସି ପଡ଼ିଲା, ହାତ ଦି'ଟା ଭୂଇଁରେ ଲଗେଇ ମୁଣ୍ଡ ପୋତିଦେଲା । ଏକଥା ଦେଖି 'ଦାଦା'ର ବୋଧେ ଦୟାହେଲା, ସେ ଗୋଟେ ହାତ ଲମ୍ବେଇ ଠୁଙ୍କାହୋଇ ବସିଥିବା ସିଂପାଞ୍ଜିର ପିଠିକୁ ଥାପୁଡେଇ ଦେଲା । ବାସ୍ ସେତିକିରେ ଦୋସ୍ତି ଜମେଇବା ପାଇଁ ଆସିଥିବା ସିଂପାଞ୍ଜି ଧଡ଼ପଡ଼ ହୋଇ ଉଠି ପଡ଼ିଲା, ପଛକୁ ଅନେଇଲା ଓ ଓଠଦିଟା. ସାମନାକୁ ଲମ୍ବେଇଲା ଓ ସେମାନେ ଦୋସ୍ତ ହୋଇଗଲେ । ଖଣ୍ଡେ ଦୂରରେ ଗୋଟେ ମା

ସିଂପାଞ୍ଜି ତା ଛୁଆଟାକୁ ବାଁ ହାତରେ ଜବରଦସ୍ତି ଧରି ଆର ହାତରେ କୁତୁକୁତୁ କରୁଥାଏ । ଖୁସିରେ ମା'ର ପାଟି ମେଲା ଓ ଛୁଆ ପାଟି ମେଲା କରି ଛାଟିପିଟି ହଉଥାଏ । ଆଉ ଦି'ଟା ଟୋକା ସିଂପାଞ୍ଜିଙ୍କର ହସଖୁସିର ଲଢ଼େଇ ଲାଗିଥାଏ । ଜଣଙ୍କର ବାଁ ହାତ ଆର ଜଣଙ୍କର ବେକକୁ ଧରିଥାଏ ଓ ସେ ଜଣଙ୍କ ଡାହାଣ ହାତରେ ଏ ଜଣଙ୍କର ବାଁ ହାତକୁ ମୋଡୁଥାଏ । ଉଭୟ ପାଟି ମେଲାକରି ହସହସ ମୁହଁରେ ଠେଲାପେଲାରେ ବ୍ୟସ୍ତ ଥାଆନ୍ତି । ଖଣ୍ଡେ ଦୂରରେ ଆଉ ଗୋଟେ ମା ସିଂପାଞ୍ଜି ଅତି କୁନିଛୁଆଟେ କୋଳରେ ଧରି ବସିଥାଏ ଓ ତିନି ଚାରିଟା ଅନ୍ୟ ସିଂପାଞ୍ଜି ଛୁଆକୁ ଗେଲ କରିବା ପାଇଁ ବ୍ୟଗ୍ର । କିନ୍ତୁ ମା ଚାହେଁନି ଯେ ଏତେ ଛୋଟ ଛୁଆ ଦେହରେ କେହି ହାତ ଲଗାନ୍ତୁ । ଓଠ ଚିପି ଆଖି ଡିମା ଡିମା କରି ସେ ଅନେଇଲା ମାତ୍ରେ ଅନ୍ୟମାନେ ଘୁଞ୍ଚିଗଲେ ଦୂରକୁ । ତୁଚ୍ଛା କଥାରେ କାଇଁ ବା କଳି କରିବା ?

ଅଥଚ ମା ହନୁ ମାଙ୍କଡ଼ ଚାହେଁ ଅନ୍ୟମାନେ ତା ଛୁଆକୁ ଗେଲ କରନ୍ତୁ । ମା ଛୁଆକୁ ଧରି ବସିଥିଲା ବେଳେ ଅନ୍ୟମାନେ ଘେରି ଯାଆନ୍ତି, କିଏ ଛୁଆର ହାତକୁ ଆଉଁସେ ଓ କିଏ ପିଠିରେ ଆଙ୍ଗୁଠି ଚଳାଏ ।

ଛୁଆମାନେ ଯିବା ଆସିବା କିମିତି କରନ୍ତି ? ପଚାରିଲେ ପୁପୁ ଓ ଇନି ।

ମାଙ୍କଡ଼ମାନେ ସାଧାରଣତଃ ଛୁଆଙ୍କୁ ପେଟତଳେ ଝୁଲେଇ ନିଅନ୍ତି । ଛୁଆ ପେଟତଳେ ଦି ହାତ ଓ ଗୋଡ଼ରେ ଜାବୁଡ଼ି ଧରି ଝୁଲି ରହେ ଓ ମଝିରେ ମଝିରେ ମା ଗୋଟେ ହାତରେ ତାକୁ ଜାବୁଡ଼ି ଧରେ ହିମତ୍ ଦବାପାଇଁ । ଚକମା ବବୁନ ପ୍ରଥମେ କିଛି ସପ୍ତାହ ଛୁଆକୁ ଏଭଳି ପେଟରେ ଜାବୁଡ଼ି ଧରିନିଏ କିନ୍ତୁ ଛୁଆ ପାଞ୍ଚ ସପ୍ତାହ ପାରି ହୋଇଗଲା ପରେ ମା'ର ଲାଞ୍ଜକୁ ଧରି ପଛଆଡୁ ଚଢ଼ି ପିଠିରେ ବସିପଡ଼େ । ସେଇଭଳି ମା ଗରିଲା ଛୁଆକୁ କାଖେଇ ନେଇଯାଏ ।

ଅନେକ ଲିଡର ହବା ପାଇଁ ଚାହାଁନ୍ତି ଓ ଯିଏ ଲିଡର ଅଛି ସେ ବୟସ ବଢ଼ିବା ସାଙ୍ଗେ ଦୁର୍ବଳ ହେଇଯାଏ ଓ ଆଶଙ୍କା କରେ ବିତାଡ଼ିତ ହେଇଯିବ, ତେଣୁ ଚିଡ଼ିଚିଡ଼ା ହେଇଯିବା ସ୍ୱାଭାବିକ। ତା ସତ୍ତ୍ୱେ



ଛୁଆମାନଙ୍କ ପ୍ରତି ସେମାନଙ୍କ ବ୍ୟବହାର ଖୁବ୍ ଭଲ। ମାଙ୍କଡ଼ମାନଙ୍କ ଛୁଆମାନେ ବହୁତ ଦିନ ପର୍ଯ୍ୟନ୍ତ ନିର୍ଭରଶୀଳ ରହନ୍ତି। ମାକାକ୍ୟୁ ମାଙ୍କଡ ଦେଢ଼ବର୍ଷ ପର୍ଯ୍ୟନ୍ତ, ଓରାଗଉଟାଙ୍ଗ୍ ଓ ଗରିଲାଛୁଆ ସାଢ଼େ ତିନିବର୍ଷ ପର୍ଯ୍ୟନ୍ତ। ବେଳେ ବେଳେ କୌଣସି କାରଣରୁ ରାଗିଥିଲେ ମାଙ୍କଡ଼ମାନେ ଅନ୍ୟର ଛୁଆକୁ ଆଡ଼େଇ ଦେବେ, ଧମକେଇବେ, କିନ୍ତୁ ମାରିବେ ନାହିଁ। ଦଳର ସମସ୍ତଙ୍କର ଉଚିତ ବ୍ୟବହାର ପାଇ ପାଇ ମାଙ୍କଡ଼ ଛୁଆଟି ବଡ଼ହେଲା ବେଳକୁ ସେ ସବୁ ନିୟମ ଶିଖିଯାଏ। ଥରେ ଯୁବକ ହେଇଗଲା ପରେ ଦୋଷ କେବେ କେହି କ୍ଷମା କରେ ନାହିଁ। ସେ ପର୍ଯ୍ୟନ୍ତ ଆରାମରେ ଏ ଡାଳରୁ ସେ ଡାଳକୁ ଡେଇଁ ମା ପିଠିରେ ଚଢ଼େ ପଡ଼ିଯିବାର ଛଳନା କରେ ଅଥଚ ଗୋଟିଏ ଡାଳରୁ ପଡିଯିବାର ଅଭିନୟ କରି ଆଉ ଗୋଟିଏ ଡାଳକୁ ଧରି ପକାଏ। ବଡ

ମାଙ୍କଡ଼ ଶିଖାନ୍ତି ସାନ ମାଙ୍କଡ଼କୁ ଗୋଟିଏ ଡାଳରୁ ବହୁ ଦୂରରେ ଥିବା ଆଉ ଗୋଟିଏ ଡାଳକୁ ଡେଇଁବାର ପ୍ରଣାଳୀ । ମାଙ୍କଡ଼ ଯେତେବେଳେ ଗୋଟେ ଡାଳରୁ ଆଉ ଗୋଟେ ଡାଳକୁ ଡିଏଁ ତା ନିଘା ରହେ ସାମନାକୁ, ଲାଞ୍ଜ ତଳୁ ଉପରକୁ ଉଠିଯାଏ, ଦେହ ବାଙ୍କେଇ ଯାଏ । ବେଳେ ବେଳେ ଡେଇଁ ପଡ଼ିବା ସମୟରେ ସଂପୂର୍ଣ୍ଣଭାବେ ଘୂରିଯାଏ ଓ ଲକ୍ଷ୍ୟ ସ୍ଥଳରେ ପହଂଚେ । ଛୁଆମାନେ ଚକିତହୋଇ ଅନେଇ ରହନ୍ତି । କେବଳ ଛୁଆମାନେ କାହିଁକି, ଲକ୍ଷ୍ୟ କରିଥିବା ମଣିଷମାନେ ମଧ୍ୟ । ପଞ୍ଚବଟିରେ ବୁଲୁଥିବା ସମୟରେ ମାଙ୍କଡ଼ମାନଙ୍କର ଗଛ ଡାଳରେ ଏ ରକମର ନୃତ୍ୟ ଖେଳ ସୀତାଙ୍କୁ ଦେଖେଇ ରାମଚନ୍ଦ୍ର କହିଥିଲେ—

''ବିଳସେ ଶାଖାରେ ଦେଖ କେଶରୀ କେ ସରି''

(ବୈଦେହିଶ ବିଳାସ)



# ଅଙ୍ଗହାନି

ଆଚ୍ଛା ପିଲେ କହିଲ ଜଣେ ଲୋକର ଗୋଡ଼ଟା କଟିଗଲେ କ'ଣ ହବ ?

କଣ ହବ ଆଉ ଗୋଡ଼ଟା ଗଲା ଜାଣ, ବେଶି ହେଲେ କାଠ ଗୋଡ଼ ଲଗେଇବେ—କହିଲେ ପୁପୁ ଓ ଇନି ।

ହଁ ଠିକ୍ କହିଚ, ମଣିଷ ଓ ଅଧିକାଂଶ ଜୀବଜନ୍ତୁଙ୍କର ଦେହରେ ଖଣ୍ଡିଆ ହେଲେ ସେଇଭଳି ରହିଯିବ । ମଣିଷର କେବଳ ନଖ, ବାଳ ଓ ରୁମ୍ ବଢ଼େ, ଚମ ମଧ୍ୟ ଛିଣ୍ଡିଗଲେ ତା ମନକୁ ମନ ନୂଆ ଚମ ହେଇ ଦେହରେ ମିଶିଯାଏ । କିନ୍ତୁ ଏଭଳି ଜୀବଜନ୍ତୁ ଅଛନ୍ତି ଯେଉଁମାନଙ୍କ ଦେହରୁ ଖଣ୍ଡେ ଚାଲିଗଲେ ମଧ୍ୟ ପୁଣି ତାହା ବଢ଼େ ।

ହଁ ହଁ ମନେ ପଡିଲା—ଇନି କହିଲା, ଝିଟିପିଟିର ଲାଞ୍ଜ ଛିଣ୍ଡି ପୁଣି ବଢ଼େ ।

ଠିକ୍ କହିଚୁ, ଗୋଟେ ମଜାକଥା ଶୁଣ । ସମୁଦ୍ର ପାଣିତଳେ କଙ୍କଡ଼ାଟିଏ ବୁଲୁଥିଲା ଖାଇବା ସଂଧାନରେ । ଏଇ ସୋର୍ ଜାତୀୟ କଙ୍କଡା ପଥରକୁ ଆଡୁଥିଲା ପୋକ ଖାଇବା ପାଇଁ । ସେ କ'ଣ ଜାଣିଥିଲା ପଥରଟା ଏତେ ଓଜନିଆ ବୋଲି, ତା ଗୋଡ଼ଟା ପଥରରେ ଚାପି ହୋଇଗଲା । ସୋର୍ କଙ୍କଡ଼ା ନିଜ ଗୋଡ଼କୁ ଟାଣିବା ପାଇଁ ଚେଷ୍ଟା କଲା କିନ୍ତୁ ପଥରର ଓଜନ ବେଶ୍ ଥିବାରୁ କଙ୍କଡ଼ା ନିଜ ଗୋଡ଼ଟା ସେଇଠି ଛିଣ୍ଡେଇ ଦେଇ ଚାଲି ଆସିଲା । ତା ଗୋଡ଼ର ବିଭିନ୍ନ ସଂଯୋଗ ସ୍ଥଳ ଦୁର୍ବଳ ଥାଏ ତେଣୁ କଙ୍କଡ଼ା ଯେଉଁ ସଂଯୋଗ ସ୍ଥାନକୁ ଚାହିଁବ ଛିଣ୍ଡେଇ ଦେଇ ପାରିବ । ବେଳେ ବେଳେ କଙ୍କଡ଼ାକୁ

ଖାଇବା ପାଇଁ ବଡ଼ ମାଛ, ତାଠୁଁ ବଡ଼ କଙ୍କଡା ଆସନ୍ତି ଓ ନିଜକୁ ରକ୍ଷା କରିବା ପାଇଁ କଙ୍କଡ଼ା ସେମାନଙ୍କ ଆଗକୁ ଗୋଟେ ଗୋଡ଼ ବଢ଼େଇଦିଏ, ସେମାନେ ଗୋଡକୁ କାମୁଡି ଧରିଲା ମାତ୍ରେ ତାକୁ ଛିଣ୍ଡେଇ ଦେଇ ପଳାଏ । ଏଇ ଛିଣ୍ଡେଇବା ଦ୍ୱାରା କଙ୍କଡ଼ାର ଦେହରୁ ରକ୍ତ ବାହାରେ ନାହିଁ ଓ ଅଳ୍ପ କିଛିଦିନ ଭିତରେ ଛିଣ୍ଡିଥିବା ଅଂଶ ଶୁଖିଯାଏ ଓ ପୁଣି ନୂଆଗୋଡ଼ ବାହାରେ ।

ସେଇଭଳି ଝିଟିପିଟିର ଲାଞ୍ଜ ଅଧାରୁ ଛିଣ୍ଡିଯାଏ, ଯଦି ତାକୁ ଅନ୍ୟ କୋଉ ବଡ଼ ଝିଟିପିଟି କିମ୍ବା ଆଉ କେହି ଧରେ । ଧରିଥିବା ଜନ୍ତୁ ଭାବେ ପୂରା ଝିଟିପିଟିକୁ ଧରି ପକେଇଲା ବୋଲି ଓ ପ୍ରକୃତ ଅବସ୍ଥା ବୁଝିଲା ବେଳକୁ ଝିଟିପିଟି ପଳେଇ ଯାଇଥାଏ । କେତେବେଳେ କେମିତି ଝିଟିପିଟି ଶକ୍ତିଶାଳୀ ଶତ୍ରୁ ଆସିବା ଜାଣିଲେ ସେ ଧରିବା ପୂର୍ବରୁ ଲାଞ୍ଜ ଅଧା ଛିଣ୍ଡେଇ ଦିଏ, ଛିଣ୍ଡା ଲାଞ୍ଜ ଛଟପଟ ହୁଏ । ଧରିବାକୁ ଆସିଥିବା ଜନ୍ତୁ ଛଟପଟ ହଉଥିବା ଲାଞ୍ଜକୁ ଦେଖି ଦ୍ୱନ୍ଦ୍ୱରେ ପଡ଼ିଯାଏ ଓ ଝିଟିପିଟି ଖସି ପଳେଇବା ପାଇଁ ସୁଯୋଗ ପାଏ । ସ୍କିଙ୍କସ୍ ବୋଲି ଏକପ୍ରକାର ଝିଟିପିଟି ଅଛି ତା'ର ଲାଞ୍ଜରୁ ଫାଳେ ଛିଣ୍ଡିଗଲେ ବେଳେ ବେଳେ ଛିଣ୍ଡା ଜାଗାରୁ ଦି'କାନି ଲାଞ୍ଜ ବାହାରେ ଅର୍ଥାତ୍ ଦୁଇଟା ଲାଞ୍ଜ ହୁଏ । ଝିଟିପିଟି କଙ୍କଡ଼ା ଇତ୍ୟାଦିଙ୍କର ଦେହ ଛିଣ୍ଡିଗଲେ କିମ୍ବା କଟିଗଲେ ରକ୍ତ ବାହାରେ ନାହିଁ । ଏକ ସ୍ୱତନ୍ତ୍ର ମେମ୍ବ୍ରେନ୍ କଟିଯାଇଥିବା ଅଙ୍ଗକୁ ଘୋଡ଼େଇ ଦେଇ ରକ୍ତପାତ ବନ୍ଦ କରେ ।

ତାରକା ମାଛ ଏଇଭଳି ଏକ ଆଶ୍ଚର୍ଯ୍ୟଜନକ ଜନ୍ତୁ । ତାର ସାଧାରଣତଃ ପାଞ୍ଚରୁ ଛଅଟି ହାତ ଥାଏ, ମୁହଁ ମଝିରେ । ଅନ୍ୟ ମାଛଙ୍କ ଆକ୍ରମଣ, ଲଢ଼େଇ କିମ୍ବା ପଥର ସନ୍ଧିରେ ପେଶିହେଇ ହାତ ଛିଣ୍ଡିଗଲେ ରକ୍ତପାତ ହୁଏ ନାହିଁ ଓ କ୍ରମଶଃ ଛିଣ୍ଡିଯାଇଥିବା ହାତ ପୁଣି ବଢ଼େ । ତିନି ତିନିଟା ହାତ ଛିଣ୍ଡି ମଧ୍ୟ ତାରକା ମାଛ ବଞ୍ଚେ ଓ ବର୍ଷେ ମଧ୍ୟରେ ତିନିଟିଯାକ ହାତ ପୁଣି ସଂପୂର୍ଣ୍ଣ ହେଇଯାଏ । ଏପରିକି

ତାରକା ମାଛକୁ ଖଣ୍ଡ ଖଣ୍ଡ କରିଦେଲେ ମଧ୍ୟ ତା ମଧ୍ୟଭାଗର ମୁହଁରେ ଯଦି କୌଣସି ଅଂଶ କୌଣସି ଖଣ୍ଡ ସାଙ୍ଗେ ଲାଗି ରହେ ସେ ଖଣ୍ଡଟା ବଢ଼ି ବଢ଼ି ତାରକା ମାଛ ହୋଇଯାଏ । ଏଇ ମାଛର ମଧ୍ୟ-ଭାଗରେ ଏକ ଗୋଲ ଚକି ଥାଏ ଯାହାକି ମୁହଁର କାମ ଦିଏ ଏବଂ ଅଙ୍ଗ ପୁଣି ବଢ଼ିବାରେ ସାହାଯ୍ୟ କରେ । ଏଇ ମାଛ ବଳବାନ୍ ଶତ୍ରୁର ଆକ୍ରମଣ ଦେଖିଲେ ଖଣ୍ଡେ ହାତ ଛିଣ୍ଡେଇ ପକେଇଦିଏ ଯାହାଦ୍ୱାରା କି ଶତ୍ରୁ ବିସ୍ମିତ ହେଇ ରହିଯାଏ । ଖଣ୍ଡିଆ ସ୍ଥାନଟା ସାଙ୍ଗେ ସାଙ୍ଗେ ବୁଜି ହେଇଯାଏ, ତାପରେ ସେଥିରେ ମାଂସପେଶୀ ବଢ଼ି ପୂର୍ବ ଅଙ୍ଗ ଫେରିଆସେ ଓ ସେଥିରେ ଧମନୀ ମଧ୍ୟ ବଢ଼ିଯାଏ । ବିଜ୍ଞାନ ଏତେ ଆଗେଇବା ସତ୍ତ୍ୱେ ମଣିଷ ଏ ପର୍ଯ୍ୟନ୍ତ ଛିଣ୍ଡିଯାଇଥିବା ଅଙ୍ଗ ପୁନର୍ବାର ବଢ଼େଇବା ବିଦ୍ୟା ହାସଲ କରିପାରି ନାହିଁ । ଅଥଚ ତାରକା ମାଛ ଏଭଳି କିପରି କରିପାରୁଛି ତାହା ଜାଣିପାରିଲେ କୌଣସି ମଣିଷର ଦାନ୍ତ ଝଡିଗଲେ ନୂଆଦାନ୍ତ ଉଠିପାରନ୍ତା, ହାତଗୋଡ କଟିଗଲେ ନୂଆ ହାତଗୋଡ ଉଠିପାରନ୍ତା ।

ତାରକା ମାଛ ଭଳିଆ ଏଇଭଳି ଅଙ୍ଗ ଛିଣ୍ଡିଯାଏ ଏକପ୍ରକାର ମେଣ୍ଢାର । ଏ ମେଣ୍ଢାର ଲାଞ୍ଜ ନାହିଁ, ଲାଞ୍ଜ ଜାଗାରେ ମୁଣା ଭଳିଆ ଗୋଟେ ମାଂସ ବଢ଼େ । ସେ ମାଂସ ବଢ଼ି ବଢ଼ି ପଛ ଆଡ଼କୁ ଝୁଲିପଡ଼େ । ମଧ୍ୟ ଏସିଆରୁ ଏଇ ମେଣ୍ଢାର ମାଂସ ମୁଣାଟି ଆପେ ଆପେ ଖସିପଡ଼େ କିମ୍ବା ଲୋକେ ତାକୁ କାଟି ନିଅନ୍ତି ଗୋଟେ ନିର୍ଦ୍ଦିଷ୍ଟ ସ୍ଥାନରେ । ମୁଣା ଯେଉଁ ସ୍ଥାନରେ ଲାଞ୍ଜ ଜାଗାରେ ଲାଗିଥାଏ ସେଇଠି ଗୋଟେ ମୋଟା ଧାର ଚମ ଉପରେ ଥାଏ । ସେଇ ଧାରରେ ମୁଣାଟି କାଟିଦେଲେ ରକ୍ତ ବାହାରିବ ନାହିଁ ଓ କିଛିଦିନ ପରେ ମାଂସ ମୁଣା ଗଜୁରିବ ଓ ସମୟ ଅନୁସାରେ ପୂର୍ଣ୍ଣ ମୁଣାରେ ପରିଣତ ହବ । ଏଇ ମାଂସ ମୁଣାକୁ ଲୋକମାନେ ଖାଆନ୍ତି ।

ଆଙ୍ଗୁଇସ ଫାଜିଲସ୍ ନାମକ ଏକ ଜିଆ ଭଳି ଦିଶୁଥିବା ଜନ୍ତୁ ପ୍ରକୃତରେ ଝିଟିପିଟି ଜାତୀୟ କିନ୍ତୁ ଗୋଡ଼ ବିହୀନ ହୋଇଥିବାରୁ ତାକୁ ଜିଆ ବୋଲି ସମସ୍ତେ କହନ୍ତି । ଆଙ୍ଗୁଇସ୍ ତା ଲାଞ୍ଜ ଛିଣ୍ଡେଇ ଦିଏ ବିପଦ ଆସିଲେ ଓ ଆକ୍ରମଣକାରୀଙ୍କୁ ବିସ୍ମିତ କରି ଖସି ପଳାଏ । ଛିଣ୍ଡାଲାଞ୍ଜ ଛଟପଟ ହେଉଥିବା ସମୟରେ ଜିଆ ଲୁଚିଯାଏ । ଛିଣ୍ଡିବା ଜାଗା ସାଙ୍ଗେ ସାଙ୍ଗେ ଶୁଖିଯାଏ ଓ ଅଳ୍ପଦିନ ପରେ ନୂଆ ଲାଞ୍ଜ ଗଜୁରିବା ଆରମ୍ଭ କରେ ।



# କୋକୋ-କାଞ୍ଜି ଓ ଇମୋ

ଆଜି ପିଲେ ତୁମକୁ ତିନୋଟି ମାଙ୍କଡ଼ ବିଷୟରେ କହିବି ଯେଉଁମାନଙ୍କ ବୁଦ୍ଧି ଆମକୁ ଆଶ୍ଚର୍ଯ୍ୟ କରିଦବ । ଆମେରିକାରେ ଏକ ଚିଡ଼ିଆଖାନାରେ ଗୋଟିଏ ଗରିଲା ଥାଏ, ନାଁ ତା'ର କୋକୋ । ଫ୍ରାନ୍‌ସିଙ୍ଗ୍ ବୋଲି ଜଣେ ଭଦ୍ରମହିଳା କୋକୋକୁ କଥା କହିବା ଶିଖେଇଲେ । ପ୍ରଥମେ ଠାରରେ ଆରମ୍ଭ ହେଲା, ଫ୍ରାନ୍‌ସିଙ୍ଗ ନିଜ କାନକୁ ଛୁଇଁଲେ କୋକୋ ତା ନିଜ କାନକୁ ଛୁଇଁଲା । ତା'ପରେ ଫ୍ରାନ୍‌ସିଙ୍ଗ୍ ନିଜ ଆଖିକୁ ଛୁଇଁଲେ ଓ ଭାବିଲେ କୋକୋ ସେହିପରି କରିବ କିନ୍ତୁ ସେ ତାର କାନକୁ ଛୁଇଁଲା । ଭଦ୍ରମହିଳା ବାରମ୍ୱାର ନିଜ ଆଖିକୁ ଛୁଇଁଲେ କିନ୍ତୁ କୋକୋ କେତେବେଳେ କାନ କେତେବେଳେ ଗାଲକୁ ଛୁଇଁଲା । ତା'ପରେ ଫ୍ରାନ୍‌ସିଙ୍ଗ କୋକୋକୁ ଗାଳିଦେଲେ ନିଜ ଠାର ଭାଷାରେ । ରାଗି ଅନେଇ ଠାରରେ କହିଲେ ତୁ ବଦମାସ୍ । କୋକୋ କିଛି ସମୟ ଚୁପ୍ ରହିଲା, ତା'ପରେ ଠାରରେ ଉତ୍ତର ଦେଲା—ନା, ମୁଁ ମଜା କରୁଥିଲି । ବର୍ଷେ ନହଉଣୁ ମାଈ ଗରିଲା କୋକୋ ଠାର ଭାଷା ଶିଖିଲା । ଆମେ ଯୋଉ ଠାର ଭାଷାରେ କାଲ ଓ ଇଡ଼ାଙ୍କୁ ଭାଷା ଶିଖାଉ, ଫ୍ରାନ୍‌ସିଙ୍ଗ ସେଇ ଠାରରେ କୋକୋକୁ ଶିଖେଇଲେ ଓ କୋକୋ ପାଞ୍ଚଶହ ପର୍ଯ୍ୟନ୍ତ ଠାର ଶିଖିଗଲା ଏପରିକି ଗାଳିଦବା ଓ ତିଆରିବା ମଧ୍ୟ ଶିଖିଗଲା, ତା'ଛଡ଼ା ସେ ନିଜେ ଠାର ଆବିଷ୍କାର କଲା । ଥରେ ମୁଦିଟିଏ ଦେଖେଇବାରୁ ସେ ଠାରରେ କହିଲା ଆଙ୍ଗୁଠି ଚୁଡି, ସିଗାରେଟ୍‌କୁ କହିଲା ବୋତଲ ଦିଆସିଲି କାଠି । କୋକୋ ଲୋକଙ୍କୁ ଦେଖିଲେ ଭାରି ଖୁସି ହୁଏ । ତାକୁ ବାର ତେର ବର୍ଷ ବୟସ ହେଲା ବେଳକୁ ସେ ଜଣେଇଲା ତାକୁ ବିଲେଇଟିଏ ଦରକାର । ତାକୁ ଖେଳଣା ବିଲେଇଟିଏ ଦିଆଗଲା । କୋକୋ ଛୁଆମାନେ ରାଗି ଫୋପାଡ଼ିଲା ପରି ଖେଳଣାଟାକୁ ଫୋପାଡି ଦେଲା ଓ ସେ କହିଲା ତା'ର ପ୍ରକୃତ ବିଲେଇଟିଏ ଦରକାର । ଶେଷକୁ

ରାସ୍ତାରେ ବୁଲୁଥିବା ବିଲେଇଟିଏ ଆଣି କୋକୋ ପାଖରେ ଛାଡ଼ି ଦିଆଗଲା ଓ ସେ ତାକୁ ଖେଳେଇଲା, ମୁଣ୍ଡରେ ବସେଇଲା ଓ ବିଲେଇଟି ବିରକ୍ତ ହେଇ ବେଳେ ବେଳେ କାମୁଡ଼ିବା ପାଇଁ ଚେଷ୍ଟା କଲେ କୋକୋ ତାକୁ ଘୁଞ୍ଚେଇ ଦିଏ ଓ ଠାର ଭାଷାରେ କହେ—ଛି ! ଯେଉଁଦିନ ବିଲେଇଟି ଜନ୍ତାରୁ ବାହାରି ଆସି ଚିଡ଼ିଆଖାନା ପାଖରେ ଗୋଟେ ଗାଡିଚ଼କ ତଳେ ପେଶି ହେଇ ମରିଗଲା କୋକୋ କାନ୍ଦିଲା ଓ ଆଉଗୋଟେ ବିଲେଇ ମାଗିଲା । କୋକୋକୁ ଥରେ ପଚ଼ରାଗଲା ଯେ ଗରିଲାମାନେ କେବେ ମରନ୍ତି । କୋକୋ କହିଲା ବୁଢ଼ାହେଇ କଷ୍ଟହେଲେ ମରନ୍ତି । ମରିଲାବେଳେ କେମିତି ଲାଗେ ? ସେ କହିଲା ନିଦୁଆ ନିଦୁଆ ଲାଗେ । ଆଚ୍ଛା କହିଲୁ ଗରିଲାମାନେ ମଣିଷ ନା ପଶୁ ? କୋକୋ କହିଲା ସୁନ୍ଦର ପଶୁ ।

କୋକୋପରି ଆଉ ଏକ ସିମ୍ପାଞ୍ଜି, ନାଁ ତା'ର କାଞ୍ଜି । ଆମେରିକାର ଆଟ୍ଲାଲାଟା ଚ଼ିଡିଆଖାନାରେ ଥାଏ । କାଞ୍ଜି ମୁଣ୍ଡରେ ହେଡ୍‌ଫୋନ୍ ଲଗେଇ ଟେପ୍‌ରେକର୍ଡରେ ଶୁଣେ ଓ ରେକର୍ଡ ହେଇଥିବା କଥା ସବୁ ମାନେ । ଯିମିତି ପିଲାମାନେ ଅନ୍ୟମାନଙ୍କଠୁଁ ଲକ୍ଷ୍ୟ କରି, ଶୁଣି ଭାଷା ଶିଖନ୍ତି କାଞ୍ଜି ସେଇଭଳିଆ ମଣିଷମାନଙ୍କ କଥା କହିବା ଢଙ୍ଗକୁ ଲକ୍ଷ୍ୟ କରି ଓ କଥାଶୁଣି ଅନେଇ କଥା ବୁଝିପାରେ । ତାକୁ ଥରେ ଜଣେ ଲୋକ କହିଲା ମୋ ବାଁ ଗୋଡ଼ ତଳେ କ'ଣଟେ ଅଛି, କାଞ୍ଜି ସଙ୍ଗେ ସଙ୍ଗେ ସେ ଲୋକଟା ପାଖକୁ ଯାଇ ବାଁ ଗୋଡ଼ଟା ଟେକିଦେଲା । କାଞ୍ଜିକୁ ଗୋଟେ କମ୍ପୁଟର କି-ବୋର୍ଡ ଦିଆହୋଇଛି ଯେଉଁଥିରେ ଜ୍ୟାମିତିକ ଚିହ୍ନ ସବୁ ଅଛି । ପ୍ରତ୍ୟେକ ଚିହ୍ନ ଗୋଟିଏ ଗୋଟିଏ ଶବ୍ଦ ପାଇଁ, ସେ ଚିହ୍ନମାନଙ୍କୁ ମିଶେଇ କାଞ୍ଜି ବାକ୍ୟ ବ୍ୟବହାର କରେ । ଏଇ କମ୍ପୁଟରକୁ ବ୍ୟବହାର କରି କେତେବେଳେ କାଞ୍ଜି କଦଳୀ ମାଗେ, କେତେବେଳେ ଲୋକଙ୍କୁ ଡାକେ, କେତେବେଳେ ଟି.ଭି. ଦେଖିବା ପାଇଁ ଚାହେଁ ତ ଆଉ କେତେବେଳେ କୁତୁକୁତୁ ହବାପାଇଁ ଚାହେଁ ଓ ଖେଳିବା ପାଇଁ ଡାକେ । କାଞ୍ଜି ଏକ ଗବେଷଣାର ବସ୍ତୁ ।

କାଞ୍ଜି ପରି ଚ଼ଲାକ ହେଉଚି ଇମୋ । ଜାପାନର କୋସିମା ଦ୍ୱୀପରେ ମାକାକେ ଜାତିର ମାଙ୍କଡ଼ ଥାଆନ୍ତି । ଶୀତଦିନେ ବରଫ

ବହୁତ ପଡ଼େ, ଗଛରୁ ପତ୍ର ଝଡ଼ିଯାଏ । ମାକାକେମାନେ ସମତଳ ଅଞ୍ଚଳକୁ ନ ଆସି ସେଇ ବରଫ ଅଞ୍ଚଳରେ ରହି ପଥର ସନ୍ଧିରୁ ଶିଉଳି, ବେଙ୍ଗ, ପୋକଜୋକ ଖାଇ ବଞ୍ଚିଲେ । ଶୀତରୁ ରକ୍ଷା ପାଇବା ପାଇଁ ପରସ୍ପରକୁ ଜାକିଜୁକା ହେଇ ବସିଲେ । ସେମାନଙ୍କ ଦେହରେ ବରଫ ଲାଗିଲେ ପରସ୍ପର ଦେହରୁ ବରଫ ଝାଡ଼ି ଦିଅନ୍ତି । ଦିନେ ଗୋଟେ ମାଙ୍କଡ଼ ଆବିଷ୍କାର କଲା ଯେ କାସିମା ଦ୍ୱୀପରେ ଗୋଟେ



ଉଷ୍ଣପ୍ରସ୍ରବଣ ଅଛି । ପ୍ରଥମେ ସେ ଗୋଡ଼ ଲମ୍ବେଇ ପାଣିକୁ ଛୁଇଁଲା, ଦେଖିଲା ପାଣି ବେଶି ଗରମ ନାହିଁ । ତାପରେ ଆସ୍ତେ ଆସ୍ତେ

ପାଣିରେ ପଶିଲା—କି ଆରାମ, ଶୀତଦିନେ ଗରମ ପାଣି । ମାଙ୍କଡ଼ଟି ଫେରିଯାଇ ସାରା ଦଳକୁ ଡାକି ଆଣିଲା ଓ ସମସ୍ତଙ୍କୁ ଦେଖେଇବା ପାଇଁ ପାଣିକୁ ଆଗ ଡେଇଁ ପଡିଲା । ସାଙ୍ଗେ ସାଙ୍ଗେ ଅନ୍ୟମାନେ ପାଣିକୁ ଡେଇଁଲେ ଓ ଶୀତଦିନେ ଆରାମରେ ଗରମ ପାଣିରେ ଗାଧେଇଲେ ।

ସାଧାରଣତଃ ମାଙ୍କଡ଼ମାନେ ଯାହା ଶିଖିଥାନ୍ତି, ଦେଖିଥାନ୍ତି ସେତିକି କରନ୍ତି, ନୂଆ କୌଶଳ ଆବୁରି ପାରନ୍ତି ନାହିଁ । ମାକାକେମାନଙ୍କର ଶୀତଦିନେ ଖାଇବା କଷ୍ଟ ଦେଖି ଜାପାନର ବୈଜ୍ଞାନିକମାନେ ସେମାନଙ୍କ ରହିବା ଜାଗାରେ କନ୍ଦମୂଳ ବିଛେଇ ଦେଲେ । ସମୁଦ୍ରକୂଳରେ ପଡ଼ିଥିବା କନ୍ଦମୂଳରେ ବାଲି ଲାଗିଥାଏ ମାଙ୍କଡ଼ମାନେ କେତେବା ଝାଡ଼ିବେ ? ତାପରେ ତାଙ୍କ ନେତା ଇମୋ ଗୋଟେ କନ୍ଦମୂଳ ନେଇ ପାଣିକୁ ଗଲା, ପାଣିରେ କନ୍ଦମୂଳକୁ ଧୋଇଲା, ତାପରେ ଚୋପା ଛଡେଇ ଦେଲା ଓ ସମୁଦ୍ରର ଲୁଣିଆ ପାଣିରେ କନ୍ଦମୂଳକୁ ବୁଡ଼େଇ ବୁଡ଼େଇ ଖାଇଲା । କନ୍ଦମୂଳ ସଫାହେଲା ଓ ଲୁଣିଆ ପାଣିରେ ମିଶି ସ୍ୱାଦୁ ବି ଲାଗିଲା । ଇମୋକୁ ଦେଖି ଅନ୍ୟମାନେ ଠିକ୍ ସେଇଆ କଲେ । କିଛିଦିନ ପରେ ବୈଜ୍ଞାନିକମାନେ ସମୁଦ୍ର କୂଳରେ ଗହମ ବିଛେଇ ଦେଲେ । ମାଙ୍କଡମାନେ ଗହମ ବାଲିରୁ ବାଛି ଖାଇବେ ବା କେମିତି ? ବୈଜ୍ଞାନିକମାନେ ଲକ୍ଷ୍ୟ କରୁଥାନ୍ତି ଏବେ ଇମୋ କ'ଣ କରିବ ? ଇମୋ କିନ୍ତୁ ହଟିବାର ପାତ୍ର ନୁହେଁ । ସେ ଆଞ୍ଜୁଳା ଆଞ୍ଜୁଳା ବାଲିମିଶା ଗହମ ନେଇ ସମୁଦ୍ର ପାଣିରେ ପକେଇ ଦେଲା, ବାଲି ପାଣିରେ ତଳକୁ ଚାଲିଗଲା ଓ ଗହମ ଭାସିଲା । ତାପରେ ହାତରେ ଛାଣି ଆଣି ଲୁଣପାଣି ମିଶା ଗହମ ଇମୋ ଖାଇଲା, ଇମୋଠୁଁ ଦେଖି ଅନ୍ୟ ମାଙ୍କଡ଼ମାନେ ବି ସେଇଆ କଲେ ।

ବାପ୍‌ରେ ବାପ୍ ଏତେ ବୁଦ୍ଧି—କହିଲେ ପୁପୁ ଓ ଇନି ।

□□

# ଉଡ଼ିପାରୁଥିବା ପଶୁ ଓ ଉଡ଼ିନପାରୁଥିବା ପକ୍ଷୀ

ଆଚ୍ଛା ପିଲେ କହିଲ ସବୁ ଚଢ଼େଇ କ'ଣ ଉଡ଼ିପାରନ୍ତି ?

ନାଇଁ, ଓଟପକ୍ଷୀ ତ ଉଡ଼ିପାରେ ନାହିଁ—କହିଲା ପୁପୁ ।

ଠିକ୍ କହିଚୁ, ଲକ୍ଷ ଲକ୍ଷ ବର୍ଷ ତଳେ ଓଟପକ୍ଷୀ ଉଡିପାରୁଥିଲା କିନ୍ତୁ ତା'ର ଦୌଡ଼ିପାରିବା ଶକ୍ତି ଓ ନିଜକୁ ରକ୍ଷା କରିପାରିବାର ବଳପାଇଁ ସେ ଅନ୍ୟାନ୍ୟ ଜୀବଜନ୍ତୁଙ୍କଠୁଁ ରକ୍ଷା ପାଇଲା । ଖାଇବା ଜିନିଷ ତ ଭୂଇଁରେ ତେଣୁ ଓଟପକ୍ଷୀକୁ ଉଡ଼ିବାପାଇଁ ଦରକାର ପଡିଲା ନାହିଁ । ଏହିପରି ଲକ୍ଷଲକ୍ଷ ବର୍ଷ ଓଟପକ୍ଷୀମାନେ ନ ଉଡ଼ିବା ଦ୍ୱାରା ତାଙ୍କ ଡେଣାର ହାଡ଼ କ୍ରମେ କ୍ରମେ ଉଭେଇଗଲା ଓ ମାଂସପେଶୀ ଦୁର୍ବଳ ହେଇଗଲା । ଓଟପକ୍ଷୀ ଉଡ଼ିପାରିଲା ନାହିଁ କିନ୍ତୁ ତା'ର କିଛି କ୍ଷତି ହେଲା ନାହିଁ । ଓଟପକ୍ଷୀର ଉଚ୍ଚତା ଆଠଫୁଟ, ଓଜନ ତିନିଶହ ପାଉଣ୍ଡ, ଲମ୍ବା ଲମ୍ବା କୁଦାମାରି ସେ ଥରକେ ପଚିଶି ଫୁଟ ଖେପିଯାଏ ଓ ଅଧିକାଂଶ ଜୀବଜନ୍ତୁଙ୍କଠୁଁ ଅଧିକ ବେଗରେ ଧାଇଁପାରେ ।

—ଖାଲି କ'ଣ ଓଟପକ୍ଷୀ ?

—ନାଇଁ ସେଇଭଳିଆ ଆହୁରି ପକ୍ଷୀ ଅଛନ୍ତି । ଓଟପକ୍ଷୀ ଆଫ୍ରିକାରେ ଥାଏ, ତା ଭଳିଆ ଆଉ ଏକ ପକ୍ଷୀ ଯାହାର ଓଜନ ଶହେ ପାଉଣ୍ଡ୍, ଓଟପକ୍ଷୀ ଭଳିଆ ଦୌଡିପାରେ (ଘଣ୍ଟାକୁ କୋଡ଼ିଏ ମାଇଲ୍), ଉଚ୍ଚତା ପାଞ୍ଚ ଫୁଟ । ଅଷ୍ଟ୍ରେଲିଆରେ ଥିବା ଏହି ଏମୁ ପକ୍ଷୀ ବେଶ୍ ବଡ଼ ଓ ବହୁସଂଖ୍ୟାରେ ଥିଲେ, କିନ୍ତୁ ଶିକାର କରି କରି ମଣିଷମାନେ ତାଙ୍କ ସଂଖ୍ୟା କମେଇ ଦେଲେ ।

ଏମୁପରି ହେଉଚି କାସାବୈରୀ, କାସାବୈରୀ ପକ୍ଷୀ ମଧ୍ୟ ଉଡିପାରେ ନାହିଁ । ଯେପର୍ଯ୍ୟନ୍ତ ମଣିଷ ଏମାନଙ୍କର ଶିକାର ନକରିଥିଲା ଏମାନେ ନିଜକୁ ରକ୍ଷା କରିପାରୁଥିଲେ କିନ୍ତୁ ଶିକାର ସଙ୍ଗେ ସଙ୍ଗେ ଏମାନଙ୍କ ସଂଖ୍ୟା କମିଗଲା ।

ଆମେରିକାର ରିଆ ଚଢ଼େଇ ଦେଖିବାକୁ ଓଟପକ୍ଷୀ ଭଳିଆ କିନ୍ତୁ ସାନ, ନଜାଣିଲା ଲୋକ ଭାବିବ ଓଟପକ୍ଷୀର ଛୁଆ ବୋଲି । ପଇଁଚାଳିଶି ପାଉଣ୍ଡ ଓଜନର ଏହି ଚଢ଼େଇଟି ଖୁବ୍ ବେଗରେ ଧାଇଁପାରେ ଓ ପହଁରିପାରେ । ଏମାନେ ଏକାସାଙ୍ଗେ ରହନ୍ତି ଓ ଛୋଟ ଛୋଟ ଦଳ ହୋଇ ଗୋଟିଏ ବଡ଼ ବସା କରନ୍ତି । ମଣିଷର ତ ନିଷ୍ଠୁରତାର ସୀମା ନାହିଁ, ଦକ୍ଷିଣ ଆମେରିକାର ବାସିନ୍ଦାମାନେ ଘୋଡ଼ାରେ ବସି ରିଆ ଚଢ଼େଇକୁ ଗୋଡ଼ାନ୍ତି ଓ ବେକରେ ରଶି ପକେଇ ଘୋଷାଡ଼ି ଘୋଷାଡ଼ି ମାରନ୍ତି । ରିଆ ଚଢ଼େଇଙ୍କ ସଂଖ୍ୟା ସେଥିପାଇଁ କମିଗଲା ।

ନିଉଜ୍‌ଲ୍ୟାଣ୍ଡରେ କୁକୁଡା ସାଇଜ୍‌ର ପକ୍ଷୀଟିଏ ଥାଏ, ଦେଖିବାକୁ କୁଜା, ଥଣ୍ଟଟି ଲମ୍ବା ଓ ଆଖି ପାଖରେ ଅଳ୍ପ କେତୋଟି ଟାଆଁସା ଟାଆଁସା ବାଳ, ନାଁ ତା'ର କ୍ୟୁଇ । ବିଚରା କ୍ୟୁଇ ବୁଦାମୂଳେ ଖୋଜି ବୁଲୁଥାଏ ପୋକଜୋକ । ସାଧାରଣତଃ ପକ୍ଷୀମାନଙ୍କର ଥଣ୍ଟ ମୂଳରେ ଶୁଙ୍ଘିବା ରନ୍ଧ୍ରଥାଏ କିନ୍ତୁ କ୍ୟୁଇର ଥଣ୍ଟ ଅଗରେ ରନ୍ଧ୍ର ଥାଏ । ସେଥିଯୋଗୁଁ କ୍ୟୁଇ ମାଟିତଳେ ପିମ୍ପୁଡ଼ି, ଗୋବର ପୋକ ଓ ଉଇ ଅଛନ୍ତି ବୋଲି ଶୁଙ୍ଘି ଜାଣି ନେଇପାରେ । ଏଇ ପକ୍ଷୀଟି ମଧ୍ୟ ନିଉଜ୍‌ଲ୍ୟାଣ୍ଡରେ ଥାଆନ୍ତି ଓ ନିଉଜ୍‌ଲ୍ୟାଣ୍ଡବାସୀଙ୍କୁ ମଧ୍ୟ ଆଦରରେ କ୍ୟୁଇ କୁହାଯାଏ ।

ଆଉ ଏଇଭଳି କୋଉ ଚଢ଼େଇ ଅଛନ୍ତି ? ପଚାରିଲେ ପୁପୁ ଓ ଇନି ।

ବାପା କହିଲେ ଅଳ୍ପ କେତେକ ଉଡ଼ି ନପାରୁଥିବା ଚଢ଼େଇଙ୍କ ମଧ୍ୟରୁ ସବୁଠାରୁ ବେଶି କିସମର ଚଢ଼େଇ ନିଉଜ୍‌ଲ୍ୟାଣ୍ଡରେ ଥାଆନ୍ତି ।

କ୍ୟୁଇ କଥା ତ ଜାଣିଲ, ନିଉଜ୍‌ଲ୍ୟାଣ୍ଡ୍‌ରେ ଏକପ୍ରକାର ଶୁଆ କାକାକୋ ଉଡ଼ିପାରେ ନାହିଁ । ଭୂଇଁରେ ଗଛର ଫଳ ମଞ୍ଜି ପୋକ ଖାଇ ବଞ୍ଚେ, ଏ ପ୍ରକାର ଚଢ଼େଇଙ୍କ ସଂଖ୍ୟା ପ୍ରାୟ ଶହେ ।

ଓ୍ୱକା ଚଢ଼େଇ ମଣିଷ ରହୁଥିବା ପାଖଆଖରେ ବୁଦାମୂଳେ ଲୁଚି ରହେ ଓ ମୂଷା, ଛୋଟ ଠେକୁଆ ଶିକାର କରେ, ବେଳେବେଳେ କୁକୁଡ଼ା ଛୁଆକୁ ଧରିନିଏ । କୁକୁଡ଼ା ଆକୃତିର ଏଇ ଚଢ଼େଇଙ୍କ ସଂଖ୍ୟା ମଧ୍ୟ ଅଳ୍ପ । ତମେମାନେ ତ ଜାଣିଚ ଉଡ଼ିପାରୁ ନଥିବା ଚଢ଼େଇଙ୍କ ମଧ୍ୟରେ ସବୁଠୁଁ ବଡ଼ ଓଟପକ୍ଷୀ, ତା ଉଚ୍ଚତା ଆଠ ଫୁଟ । ଆଉ ଗୋଟିଏ ଚଢ଼େଇ ଥିଲା ଯାହାର ଉଚ୍ଚତା ବାର ଫୁଟ ଥିଲା । ସେ ବିଚରା ଗଛପତ୍ର ଫଳ ଖାଇ ବଞ୍ଚୁଥିଲା, ମଣିଷର କିଛି କ୍ଷତି କରୁନଥିଲା । ନିଉଜ୍‌ଲ୍ୟାଣ୍ଡ୍‌ରେ ଏଇ ବିଖ୍ୟାତ ମୋଆ ଚଢ଼େଇକୁ ମଣିଷମାନେ ଶିକାର କରି ଶେଷ କରିଦେଲେ । ବର୍ତ୍ତମାନ କେବଳ ମୋଆର ଚିତ୍ର ସିନା ଦେଖିବା ମୋଆକୁ ଦେଖିପାରିବା ନାହିଁ ।

ବଡ଼ଦୁଃଖର କଥା—ପିଲାମାନେ କହିଲେ । ଉଡ଼ିନପାରୁଥିବା ପକ୍ଷୀମାନଙ୍କୁ ରକ୍ଷା ନକଲେ ସେମାନେ ତ ସବୁ ମରିଯିବେ ଓ ସେମାନଙ୍କର ସରୁ ଓ ଦୁର୍ବଳ ଡେଣା କିଛି କାମକୁ ଆସୁନାହିଁ ।

ବାପା କହିଲେ କେବଳ ବ୍ୟତିକ୍ରମ ହେଉଚି ପେଙ୍ଗୁଇନ୍ ଚଢ଼େଇମାନଙ୍କର । ପେଙ୍ଗୁଇନ୍‌ର ଡେଣା ଉଡ଼ିବାରେ ସାହାଯ୍ୟ କରେନି ସିନା କିନ୍ତୁ ପହଁରିବାରେ ବହୁତ ସାହାଯ୍ୟ କରେ । ପେଙ୍ଗୁଇନ୍ ପକ୍ଷୀ ଚାଲିଲାବେଳେ ଟଳିଟଳି ଚାଲେ କିନ୍ତୁ ପାଣିରେ ଘଣ୍ଟାକୁ କୋଡ଼ିଏ କିଲୋମିଟର ବେଗରେ ପହଁରି ପାରେ ଓ ବେଳେବେଳେ ପେଙ୍ଗୁଇନ୍‌ମାନେ ବିନା ବିଶ୍ରାମରେ ତିନି ଚାରିମାସ ପର୍ଯ୍ୟନ୍ତ ପହଁରୁଥାନ୍ତି ଓ ସାତଶହ ଆଠଶହ ମାଇଲ ଅତିକ୍ରମ କରିଯାଆନ୍ତି ।

ବଡ ଆଶ୍ଚର୍ଯ୍ୟ ତ, ପକ୍ଷୀ ହେଇ ଉଡ଼ିପାରୁ ନାହାଁନ୍ତି—କହିଲେ ପିଲାମାନେ । ଇନି ଥଟ୍ଟାକରି କହିଲା ଯଦି କେତେକ ପକ୍ଷୀ ଉଡ଼ି ନ

ପାରନ୍ତି ଇମିତି ବି ଥାଇପାରେ ଯେ କେତେକ ଜୀବଜନ୍ତୁ ପକ୍ଷୀ ନହୋଇ ଉଡ଼ିପାରୁଥିବେ ।

ଠିକ୍ କହିଲୁ—ବାପା କହିଲେ । ଏଭଳି ଉଡ଼ିପାରୁଥିବା ଅଳ୍ପ କେତେକ ଜନ୍ତୁ ମଧ୍ୟ ଅଛନ୍ତି । ସେମାନେ ପ୍ରକୃତରେ ଉଡ଼ନ୍ତି ନାହିଁ କିନ୍ତୁ ତାଙ୍କର ଶରୀର ସଂଗଠଣ ଦ୍ୱାରା ଆକାଶରେ ଉଡ଼ିଲା ଭଳି ଜଣାପଡ଼ନ୍ତି । ଆଲାସ୍କା ଦେଶରେ ଏକପ୍ରକାର ଗୁଣ୍ଡୁଚିମୂଷା ଅଛନ୍ତି, ତା ପେଟତଳେ ଅଳ୍ପ ମୋଟା ଝିଲ୍ଲି ବାହାରି ଗୋଡ଼ ସାଙ୍ଗରେ ଲାଗିଥାଏ । ଲାଂଞ୍ଜଟା ଦେହ ତୁଳନାରେ ମୋଟା, ଗୁଣ୍ଡୁଚି ଗୋଟେ ସ୍ଥାନରୁ ଡେଇଁପଡ଼ି ମୁଣ୍ଡଟା ଟେକିଦିଏ ଲାଞ୍ଜଟାକୁ ତଳେଇ ଦିଏ ଓ ଗୋଡ଼ହାତ ମେଲା କରିଦିଏ, ଯାହାଦ୍ୱାରା ପବନରେ ଠେଲିହେଇ ପଚାଶ ଷାଠିଏ ଗଜ ପର୍ଯ୍ୟନ୍ତ ପଳାଏ । ଏଇଭଳି ଉଡୁଥିବା ସମୟରେ ଲାଞ୍ଜକୁ ବାଁ ଡାହାଣ କରି ଦିଗ ପରିବର୍ତ୍ତନ ମଧ୍ୟ କରି ଦେଇପାରେ ।

ସେଇଭଳି ଦକ୍ଷିଣ ଏସିଆରେ ଅଧଫୁଟ ଲମ୍ବର ଏଣ୍ଡୁଅର ପେଟର ଚମ ଓହଳିଥାଏ ଓ ଡେଇଁଲା ମାତ୍ରେ ମେଲେଇ ହେଇଯାଏ । କମଳା କଳାରଙ୍ଗ ମିଶ୍ରିତ ଏଇ ଚମ ଦୂରରୁ ରଙ୍ଗିନ ଛତାଟେ ଭଳିଆ ଦିଶେ ଓ ଏଣ୍ଡୁଅକୁ ବେଶ୍ କିଛିବାଟ ଆକାଶରେ ଠେଲିନିଏ । ଯାଠୁ ବେଶି କିନ୍ତୁ ଉଡ଼ିପାରେ ଚାରିଫୁଟିଆ ପ୍ରକାଣ୍ଡ ଗୁଣ୍ଡୁଚିମୂଷା । ସେ ଏଇଭଳିଆ ଦେହର ଚମକୁ ମେଲେଇ ଚାରିଶହ ପାଞ୍ଚଶହ ଗଜ ପର୍ଯ୍ୟନ୍ତ ଉଡ଼ିଯାଇପାରେ । ଉତ୍ତର ଆମେରିକାରେ ବି ଏଇପ୍ରକାର ଗୁଣ୍ଡଚିମୂଷା ଥାଆନ୍ତି ସେମାନେ ବି ଉଡ଼ନ୍ତି କିନ୍ତୁ ତାଙ୍କ ଉଡ଼ିବାରେ ବେଶି କରାମତି ଥାଏ । ଉଡିବା ସମୟରେ ଏହି ଗୁଣ୍ଡୁଚିମୂଷା ବାଁ ଡାହାଣ, ତଳ ଉପର କରି ଏପରିକି ପଛକୁ ଫେରି ଆସିପାରେ । ସେଇଭଳି କେତେକ ସାପମଧ୍ୟ ଉଡ଼ିପାରନ୍ତି । ଗଛ ଉପରେ ଗୁଡ଼େଇ ହେଇ ହଠାତ୍ ଗୁଡ଼େଇବା ଅବସ୍ଥାରୁ ସିଧା ହେଇଯାଆନ୍ତି ଯାହାଦ୍ୱାରା ଝଟ୍‌କା ଖାଇ ଶହେଫୁଟ ପର୍ଯ୍ୟନ୍ତ ସାପ ଉଡ଼ିଯାଇପାରେ । ସେମାନେ ନିଜକୁ ରକ୍ଷା କରିବା ପାଇଁ ଏଭଳି କରନ୍ତି ।

□□

# ମିଛ ମିଛ ଖାଲି ମିଛ

ବାପା ଆମ କ୍ଲାସ୍‌ରେ ଗୋଟେ ପିଲା କହୁଥିଲା ଯେ ତାଙ୍କ ଗାଁର ଜଣେ ଲୋକ ସାପଟିଏ ମାରିଦେଲା ଓ ଦିଦିନ ପରେ ସାପର ସାଙ୍ଗ ଖୋଜି ଖୋଜି ସେ ଲୋକକୁ ଘର ଭିତରେ ପଶି ମାରିଲା—ସାପମାନେ କ'ଣ ଲୋକ ଚିହ୍ନିପାରନ୍ତି ?

ଭୂଲ୍, ଏକଦମ୍ ଭୂଲ୍ ଧାରଣା—କହିଲେ ବାପା । ସାପମାନେ ମଣିଷ ଚିହ୍ନିପାରନ୍ତି ନାହିଁ, ଆମର ବଡ଼ ଭୁଲ୍ ଧାରଣା ଯେ ସାପକୁ ମାରିଲେ ତା ସଙ୍ଗିନୀ ଆସି ଖୋଜି ଖୋଜି ମାରିବ । ଆଉ ଏକ ଧାରଣା ଯେ ସାପ ଶୁଣିପାରେ, ସଙ୍ଗୀତ ଶୁଣିବାକୁ ଭଲପାଏ—ପ୍ରକୃତରେ ସାପ ପୂରାପୂରି କାଲା ।

ତେବେ ସେ କେମିତି ଜାଣିପାରେ ତା ପାଖକୁ ଗଲେ ?

ଆମେ ଯେତେବେଳେ ଚାଲିକରି ଯାଉ ଭୂଇଁରେ କମ୍ପନ ହୁଏ ସେଇଥିରୁ ସାପ ଜାଣିପାରେ । ଅଥଚ ପେଚା କିମ୍ବା ଚିଲ ଉଡ଼ିଆସି ଧରିଲେ ସାପର ଜାଣିବାର ସୁଯୋଗ ନଥାଏ (ଯଦି ନ ଦେଖି ପାରିଲା) ।

କିନ୍ତୁ ସାପ ଭାରି ରାଗି—ପଚାରିଲା ଇନି ।

ଆଦୌ ନୁହେଁ, ସାପ ଭାରି ଭୟାଳୁ, ମଣିଷ ଜୀବଜନ୍ତୁ ଦେଖିଲେ ଦୂରେଇ ଯାଏ । ତା ଦେହରେ ଗୋଡ଼ ପଡ଼ିଗଲେ କିମ୍ବା ଅତି ପାଖକୁ ଚାଲିଗଲେ ସେ ଭୟରେ ଚୋଟମାରେ । ତା'ଛଡ଼ା ସାପ କ'ଣ ଜାଣିଚି ଯେ ତା ପାଟିରେ ବିଷ ଅଛି ? ଏଭଳି ମଧ ବହୁତ ଉଦାହରଣ ଅଛି ଯେ ସାପର ଅତି ନିକଟକୁ ଯାଇ ମଧ ସାପ ପଳେଇ ଯାଇଛି, କାମୁଡ଼ି ନାହିଁ ।

କିନ୍ତୁ ଅଜଗର ସାପ ଭାରି ଭୟଙ୍କର, ମଣିଷକୁ ଦେଖିଲାମାତ୍ରେ ଗୁଡ଼େଇ ତାକୁ ମାରି ଖାଇଦବ—ପ୍ରସ୍ତାବ ଦେଲା ପୁପୁ ।

ଏକଥା ଆଦୌ ସତନୁହେଁ ଅଜଗର ମଣିଷକୁ ଆକ୍ରମଣ କରିବାରେ ଗୋଟିଏ ବି ଦୃଷ୍ଟାନ୍ତ ନାହିଁ—କହିଲେ ବାପା । ପୁଣି ବୁଝେଇ କହିଲେ, ଥରେ ସେ ଜିପ୍‌ରେ ଶିମୁଳି ପାହାଡ଼ ଜଙ୍ଗଲରେ ଯାଉଥିଲେ, ରାସ୍ତା ଉପରେ ଅଜଗର ସାପଟେ ଶୋଇ ଖରା ପୁହଁଉଥିଲା । ଏଇ ସମୟରେ ଦଶବାର ଜଣ ଆଦିବାସୀ ଆସି ପହଞ୍ଚିଲେ ଓ ଅଜଗରକୁ ଆସ୍ତେ ଟେକିନେଇ ରାସ୍ତାକଡ଼ରେ ଥୋଇ ଦେଲେ । ଜଙ୍ଗଲର ଆଦିବାସୀମାନେ ଅଜଗରକୁ ଡରନ୍ତି ନାହିଁ ।

ଆଚ୍ଛା ବାପା କହିଲ ଓଟପକ୍ଷୀ କାହିଁକି ଝଡ଼ ଆସିଲେ ବାଲି ଭିତରେ ମୁଣ୍ଡ ପୋତିଦିଏ ?

ବାପା ଆଉଥରେ ହସି କହିଲେ—ସେ ଧାରଣା ବି ଭୁଲ୍ । ଓଟପକ୍ଷୀର ବେକଟା ବହୁତ ଲମ୍ବା, ସେ ବେଳେବେଳେ ଚାହେଁ ତାକୁ ଅନ୍ୟମାନେ ନ ଦେଖନ୍ତୁ ଏବଂ ଛୋଟ ଛୋଟ ବୁଦାଭିତରେ ସେ ଲୁଚିଯାଏ । ଶତ୍ରୁ କିଏ ଅଛି କି ?

ହଁ ହେଇଥିବ—କହିଲା ଇନି । ତେବେ ଗଧିଆକୁ ମଧ ଭାରି ଡର ଲାଗେ, ବହୁତ ସଂଖ୍ୟାରେ ସେମାନେ ମିଶି ଶିକାର କରନ୍ତି ।

ନାଁଲୋ ଝିଅ ଏ ଧାରଣା ମଧ ଭୁଲ୍ । କେବଳ ତୁନ୍ଦ୍ରା ଅଞ୍ଚଳରେ ଯେତେବେଳେ ଖାଇବା ପାଇଁ କିଛି ମିଳେ ନାହିଁ ସେଇଠି ଗଧିଆମାନେ ଭୋକରେ ଆଉଟୁପାଉଟୁ ହୋଇ ମିଳିମିଶି ଶିକାର କରନ୍ତି ।

ବାପା, ବାପା, ଭାଲୁମାନେ ପରା କାମୁଡ଼ିବା ପୂର୍ବରୁ କୁଣ୍ଢେଇ ପକାନ୍ତି, ସେଇଥିପାଇଁ ବିଅର୍ ହଗ୍ ବୋଲି କୁହାଯାଏ ।

ଭାଲୁମାନେ ନିହାତି ଦରକାର ପଡ଼ିଲେ ଆକ୍ରମଣ କରନ୍ତି, ରାମ୍ପୁଡ଼ନ୍ତି, କାମୁଡ଼ନ୍ତି କିନ୍ତୁ କୁଣ୍ଢେଇ ଧରନ୍ତି ନାହିଁ କାହାକୁ । ରେଡ୍‌ରାଗ୍ ଟୁ ବୁଲ୍ ଅର୍ଥାତ୍ ଷଣ୍ଢକୁ ନାଲିଆ କନା ଦେଖେଇଲେ ସେ ରାଗିଯାଏ,

ଏ ଧାରଣା ବି ଭୁଲ୍ । ଷଣ୍ଢ, ଗାଈ, ମଇଁଷି ଇତ୍ୟାଦିଙ୍କର ରଙ୍ଗ ଚିହ୍ନିବାର ଶକ୍ତି ନାହିଁ । ଅଧିକାଂଶ ଜୀବଜନ୍ତୁଙ୍କ ପାଇଁ ଦୁଇଟା ରଙ୍ଗ—ଧଳା ଓ କଳା ।

ଆଚ୍ଛା ବାପା କହିଲ ନେଉଳ-ସାପ ଲଢ଼େଇ ସମୟରେ ସାପ ଯେତେବେଳେ ନେଉଳକୁ ମାରେ ନେଉଳ ସାଙ୍ଗେ ସାଙ୍ଗେ ବୁଦା



ଭିତରକୁ ପଶିଯାଇ ଚେରମୂଳ ଖାଇଦେଇ ପଳେଇ ଆସେ, ସେଇଥିପାଇଁ ସାପ ବିଷ ତାକୁ କାଟୁ କରେ ନାହିଁ ।

ସେଭଳି ପ୍ରକୃତରେ ହୁଏ ନାହିଁ—ବୁଝେଇଲେ ବାପା । ସାପର ଚୋଟ ବାଜିଲେ ନେଉଳ ବଂଚିବ ନାହିଁ, ଅନେକ ସମୟରେ ସାପ

ନେଉଳ ଲଢ଼େଇରେ ନେଉଳ ବି ମରିଯାଏ କିନ୍ତୁ ଅଧିକାଂଶ ସମୟରେ ନେଉଳ ଜିତେ କାରଣ ସେ ବହୁତ କ୍ଷୀପ୍ର । ସାପ ଚୋଟ ମାରିବା ମାତ୍ରେ ସେ ଡେଇଁପଡ଼ି ଘୁଞ୍ଚିଯାଏ ଓ ଅନେକ ଚୋଟ ମାରି ମାରି ସାପ କ୍ଳାନ୍ତ ହୋଇଗଲା ପରେ ସେ ତା ମୁଣ୍ଡକୁ ପଛଆଡ଼ୁ ଧରିପକାଏ ।

ଆଚ୍ଛା ଝିଙ୍କ କିମିତି ତୀର ମାରେ କହିଲ ?

ଝିଙ୍କ ତୀରମାରେ ନାହିଁ, ଝିଙ୍କ ଉପରେ ଆକ୍ରମଣ ହେଲେ ସେ ଫୁଲିଯାଏ, ତା ଦେହର ତୀର ଗୁଡ଼ା ଟାଙ୍କୁରି ଉଠେ ଓ ଯେହେତୁ ତୀରଗୁଡ଼ାର ପଛକୁ ମୁହଁ ସେ ବୁଲିପଡ଼ି ପଛୁଆ ଦୌଡ଼େ ଆକ୍ରମଣକାରୀ ଆଡ଼କୁ । ଯେହେତୁ ବାଘର ପ୍ରକୃତି ପଛଆଡ଼ୁ ଆକ୍ରମଣ କରିବା ଝିଙ୍କ ଆକ୍ରମଣ ସମୟରେ ତା ଦେହରେ ତୀର ଲାଗିଯାଏ ।

ଆଚ୍ଛା ବାପା ଏକଥା କ'ଣ ସତ, ଇଗଲ ଚଢ଼େଇ ବୁଢ଼ା ହେଇଗଲେ ଉଚ୍ଚଜାଗାରୁ ଡେଇଁପଡ଼ି ଆତ୍ମହତ୍ୟା କରେ ?

ଅନେକ କିସମର ଇଗଲ ଚଢ଼େଇ ଅଛନ୍ତି, ଯେଉଁମାନେ ଉଚ୍ଚ ପାହାଡ଼ ସନ୍ଧିରେ ରହନ୍ତି । ଅତି ବୁଢ଼ା ହେଲେ ଶିକାର ନକରିପାରି ଦୁର୍ବଳ ହେଇ ଯାଆନ୍ତି । କିନ୍ତୁ ଭୋକରେ ଆଉଟୁ ପାଉଟୁ ହୋଇ ଉଡ଼ିବାକୁ ଚେଷ୍ଟା କଲାବେଳେ ଉଡ଼ି ନପାରି ପଡ଼ିଯାଆନ୍ତି ।

ତେବେ କୁମ୍ଭୀର, ବାଘ, ଭାଲୁ, ବଣମଣିଷ ଦେଖିଲାମାତ୍ରେ କାହିଁକି ଆକ୍ରମଣ କରନ୍ତି ?

ଏମାନେ ଦେଖିଲାମାତ୍ରେ ଆକ୍ରମଣ କରନ୍ତି ନାହିଁ, ପ୍ରକୃତରେ ବାଘ ମଣିଷକୁ ବହୁତ ଡ଼ରେ କିନ୍ତୁ କୌଣସି କାରଣ ଯୋଗୁଁ ଯଦି ଅକର୍ମଣ୍ୟ ହୋଇଯାଇଥାଏ ତେବେ ବାଧ୍ୟ ହୋଇ ମଣିଷ, ଗୋରୁ, ଛେଳିଙ୍କୁ ଆକ୍ରମଣ କରେ । ସେଇଭଳି କୁମ୍ଭୀର—କୁମ୍ଭୀରର ଯଦି ପେଟ ପୂରିଥାଏ ତେବେ ସେ ଆକ୍ରମଣ କରେ ନାହିଁ । ଗଣ୍ଡା, ହିପୋ, ଇତ୍ୟାଦି ମଣିଷଙ୍କୁ ଦେଖିଲେ ଦୂରକୁ ପଳେଇ ଯାଆନ୍ତି ।

ପିଲାମାନେ ଜାଣିରଖ ଯେ ଅଧିକାଂଶ ଜୀବଜନ୍ତୁଙ୍କ ପାଇଁ ଖାଦ୍ୟ ହେଲା ମାଂସ ଓ ସେମାନେ ଶିକାର କରନ୍ତି ବଞ୍ଚିରହିବା ପାଇଁ କିନ୍ତୁ

ମଣିଷ ପାଇଁ ଦୁଇଟା ନିର୍ବାଚନ - ଆମିଷ ଓ ନିରାମିଷ । ଆମେ ନିରାମିଷ ଖାଇବାର ସୁଯୋଗ ପାଇ ମଧ୍ୟ ଆମିଷ ଖାଉ ଓ ସେଥିପାଇଁ



ହଜାର ହଜାର ଜୀବଜନ୍ତୁଙ୍କୁ ମାରୁ । ଥରେ ହିସାବ କରି ଦେଖ ତ, ମଣିଷମାନଙ୍କ ଦ୍ୱାରା ମାଛ, କୁକୁଡ଼ା, ଛେଳି, ମେଣ୍ଢା, ଗାଈ ଓ ଜଙ୍ଗଲର ଜୀବଜନ୍ତୁ ବର୍ଷକୁ କେତେ ମରନ୍ତି ଓ ଜୀବଜନ୍ତୁଙ୍କ ଦ୍ୱାରା କେତେ ମଣିଷ ମରନ୍ତି ? ଆମର ଜୀବଜନ୍ତୁଙ୍କୁ ଡରିବାର ନାହିଁ ବରଂ ଜୀବଜନ୍ତୁଙ୍କର ଆମେ ହଉଚୁ ପରମ ଶତ୍ରୁ ।

ତେବେ ଲୋକମାନେ ଜୀବଜନ୍ତୁଙ୍କୁ ଏତେ ଡରନ୍ତି କାହିଁକି ?

ଏଇ ଡରଟା ଆମମାନଙ୍କ ମନରେ ରହିଯାଇଚି ହଜାର ହଜାର ବର୍ଷ ଧରି । ମଣିଷ ଯେତେବେଳେ ଜଙ୍ଗଲରେ ରହୁଥିଲା

ସେତେବେଳେ ଅନ୍ଧାର ହେଲାମାତ୍ରେ ହୁଏ ଅଜଣା ଭୟ ଓ ଜୀବଜନ୍ତୁଙ୍କୁ ଭୟ । ତେଣୁ ସେମାନେ ନିଆଁ ଜାଳି ଠୁଳ ହୋଇ ବସୁଥିଲେ । ଯଦିବା ମଣିଷ ଜଙ୍ଗଲ କିମ୍ୱା ଗୁଂଫାରେ ରହୁନାହିଁ ସେ ଭୟଟା ରହିଯାଇଚି ।

ମଣିଷ ଗଛରେ ରହି ଅଧିକାଂଶ ଜୀବଜନ୍ତୁଙ୍କଠୁଁ ରକ୍ଷା ପାଉଥିଲା, ଡାଳରେ ଝୁଲୁଥିଲା । ସେଇ ଝୁଲିବା ଅଭ୍ୟାସ ମଧ୍ୟ ଆମେମାନେ ରଖିଚୁ ଦୋଳିରେ । ଛୁଆ ଜନ୍ମ ହେଲାମାତ୍ରେ ଦୋଳିରେ ଝୁଲେଇଲେ ସେ ଭଲପାଏ, ଅଥଚ ପଶୁମାନେ ଛୁଆମାନଙ୍କୁ ଝୁଲାନ୍ତି ନାହିଁ, କେବଳ ମାଙ୍କଡ଼ମାନେ ବସିବା ଅବସ୍ଥାରେ ଛୁଆଙ୍କୁ ଧରି ଦେହକୁ ଦିପଟୁ ଘୂରାନ୍ତି ଓ ସେଇଟା ଛୁଆର ଝୁଲିବା ସାଙ୍ଗେ ସମାନ ହୁଏ ।

ମଣିଷ ସାପକୁ ବେଶି ଡରେ, କାରଣ ସେ ଗଛରେ ଓ ଗୁଂଫାରେ ରହୁଥିଲା ଓ ଅନ୍ଧାରରେ ସାପକୁ ଠାବ କରିବା ଭାରି କଷ୍ଟ । ସେଇ ଭୟ ମଣିଷଙ୍କ ପୂର୍ବପୁରୁଷ ମାଙ୍କଡ଼ଙ୍କର ମଧ୍ୟ ଅଛି । ଥରେ ଗୋଟିଏ ଚିଡ଼ିଆଖାନାରେ ଗୋଟେ ବଡ଼ ସିଂପାଞ୍ଜି ଯନ୍ତା ଭିତରୁ ବାହାରି ଆସିଲା ଓ ଯେତେ ଯାହାକଲେ ମଧ୍ୟ ଯନ୍ତା ଭିତରକୁ ପଶିଲା ନାହିଁ, ଶେଷରେ ଚିଡ଼ିଆଖାନାର ପରିଚାଳକ ଗୋଟେ ବିଷହୀନ ସାପ ଧରି ସିଂପାଞ୍ଜି ଆଡ଼କୁ ଆଗେଇ ଆସିଲେ । ବାସ୍ ସେତିକିରେ ସିଂପାଞ୍ଜି ଭୟରେ ବୋବାଳି ପକେଇ ଯନ୍ତାଭିତରକୁ ପଶିଗଲା ।

ତେବେ ଜୀବଜନ୍ତୁମାନେ ହିଂସ୍ର ନୁହଁନ୍ତି ? ପଚାରିଲେ ପିଲେ ।

ଆଦୌ ନୁହେଁ, ଲୋକମାନଙ୍କ ସଂଖ୍ୟା ପ୍ରତି ପନ୍ଦର ବର୍ଷରେ ଶହେ କୋଟି ବଢୁଚି, ଜୀବଜନ୍ତୁଙ୍କ ସଂଖ୍ୟା ପ୍ରତିବର୍ଷ ଲକ୍ଷଲକ୍ଷ ସଂଖ୍ୟାରେ କମୁଚି । ଏଥିରୁ କହିଲ ପିଲେ କିଏ ବେଶି ହିଂସ୍ର—ମଣିଷ ନା ଜୀବଜନ୍ତୁ ?

ᑕᑐ

# ପ୍ରେମର ପରିପ୍ରକାଶ

ହଂସ ଜାତୀୟ ଚଢ଼େଇ ବୋବିନ୍‌ର ବେକ ଓ ପେଟ ଧଳା, ପିଠି କଳା, ଗୋଡ଼ ହଳଦିଆ । ପୁରୁଷ ଚଢ଼େଇଟି ଚାଲିଲା ନିଜର ସ୍ତ୍ରୀ ବାଛିବା ପାଇଁ, ମାଈ ବୋବିନ୍‌କୁ ଦେଖି ଆଗକୁ ଝୁଙ୍କି ପଡ଼ିଲା, ବେକ ଲମ୍ୱେଇ ଦେଲା ଓ ଦୁଇଡେଣା ଫଡ଼୍‌ଫଡ଼୍ କଲା । ମାଈ ଚଢ଼େଇଟି ଚୁପ୍‌ଚାପ୍ ବସି ରହିବା ଦେଖି ପୁରୁଷ ବୋବିନ୍ ରାଗରେ ତାକୁ ଦି'ଥର ଖୁମ୍ପି ଆଉ ଗୋଟିଏ ମାଈ ଚଢ଼େଇ ପାଖକୁ ଗଲା । ଏଥର ମାଈ ଚଢ଼େଇଟି ଦୌଡ଼ି ଆସିଲା ପାଖକୁ, ତାପରେ ଉଭୟେ ଗୋଡ଼କୁ ଗୋଡ଼ ମିଳେଇ କିଛି ସମୟ ନାଚିଲେ, ଏକା ସାଙ୍ଗେ ଝୁଙ୍କିଲେ, ଏକାସାଙ୍ଗେ ବେକ ସିଧା କଲେ ଓ ପରସ୍ପରକୁ ଆସ୍ତେ ଆସ୍ତେ ଖୁମ୍ପିଲେ । ତାପରେ ଦୁହେଁ ଖୁସିରେ ଉଡ଼ିଗଲେ ପ୍ରେମକରିବା ପାଇଁ ଓ ବସା ବାନ୍ଧିବା ପାଇଁ । ସେହିଭଳି ଆଲବଟସ ଚଢ଼େଇ ମାଈ ଚଢ଼େଇ ପାଖେ ଝୁଙ୍କିଲା ଓ ଉଭୟେ ନାଚିଲେ, କିନ୍ତୁ ଏଇ ନାଚ ଚାଲିରହିଲା ଅନେକ ଦିନ ପର୍ଯ୍ୟନ୍ତ ।

ଜୀବଜନ୍ତୁ, ପଶୁପକ୍ଷୀ ଜଗତରେ ପୁରୁଷ ବେଶି ଚେଷ୍ଟା କରେ ନିଜକୁ ସଜେଇ, ନାଚିକୁଦି, ଗୀତଗାଇ ଏବଂ ବେଳେବେଳେ ଭେଟି ନେଇ ସ୍ତ୍ରୀକୁ ଆକୃଷ୍ଟ କରିବା ପାଇଁ । ମୟୂର ପୁଚ୍ଛ ମେଲେଇ ନାଚେ ମୟୂରୀକୁ ଡାକିବା ପାଇଁ । ଅଷ୍ଟ୍ରେଲିଆର ବାଓ୍ୱାର ପକ୍ଷୀ ବସାକୁ ରଙ୍ଗିନ୍ ଫୁଲରେ ସଜାଏ, ବିଭିନ୍ନ ପକ୍ଷୀର ସ୍ୱରକୁ ଅନୁକରଣ କରି ସୁନ୍ଦର ସ୍ୱରରେ ବୋବାଏ ମାଈ ଚଢ଼େଇକୁ ଡାକିବା ପାଇଁ ।

ସେମାନେ ବେଳେବେଳେ ପ୍ରତିଦ୍ୱନ୍ଦ୍ୱୀଙ୍କୁ ତଡ଼ିବା ପାଇଁ ସ୍ୱତନ୍ତ୍ର ଭାବରେ ଶବ୍ଦ କରନ୍ତି । ଝିଣ୍ଟିକା ଅଲଗା କିସମର ବୋବାଏ, ବେଙ୍ଗ କ-କ କରେ, ମଶା ଭିନ୍ନ ସ୍ୱରରେ ଗୁଣୁଗୁଣୁ କରେ ଅପର ଲିଙ୍ଗକୁ ଆକୃଷ୍ଟ କରିବା ପାଇଁ ଓ ପ୍ରତିଦ୍ୱନ୍ଦ୍ୱୀଙ୍କୁ ସାବଧାନ କରିବା ପାଇଁ । ହରିଣ ଚାରିଦିଗକୁ ମୁହଁ କରି ଉଚ୍ଚ ସ୍ୱରରେ ବୋବାଏ, ସତେ ଯେମିତି କହୁଚି ସାବଧାନ ମୋ ଇଲାକାକୁ ଆଉ କୋଉ ପୁରୁଷ ହରିଣ ନଆସୁ । ଅଥଚ ହମିଙ୍ଗ୍ ବାର୍ଡ଼ ଆକାଶରେ ଉଡ଼େ, ତଳ ଉପର ହୁଏ, ଚକର ମାରେ, ବିଭିନ୍ନ ଢଙ୍ଗରେ ଦିଗ ପରିବର୍ତ୍ତନ କରେ ମାଈ ପକ୍ଷୀକୁ ଖୁସି କରିବା ପାଇଁ ।

ପକ୍ଷୀ ଓ ଅନ୍ୟମାନେ ଯୌତୁକ ମଧ ଦିଅନ୍ତି । ଜଳଚର ପକ୍ଷୀ ସପାର୍ ମାଈ ପକ୍ଷୀକୁ ଖୁସି କରିବା ପାଇଁ ବସା ତିଆରି କରିବା ଜିନିଷ ଆଣି ଭେଟି ଦିଏ । ବସା ତିଆରି କରିବା ଜିନିଷ ପସନ୍ଦ ହେଲେ ମାଈ ପକ୍ଷୀ ଗ୍ରହଣ କରେ ଓ ଉଭୟେ ପ୍ରେମ କରନ୍ତି । ଡ୍ୟାନ୍ସ ଫ୍ଲାଇଜ୍‌ର ଯୌତୁକ ଦବା ନୀତି ଆହୁରି ବିଚିତ୍ର । ମାଈ ପୋକକୁ ଖୁସି କରିବା ପାଇଁ ସେ ପୋକଟିଏ ଆଣେ ଓ ପୋକଟିକୁ ଅନ୍ୟ ଡ୍ୟାନ୍ସଫ୍ଲାଇଜ୍‌ମାନେ ନିଜ ନିଜ ଦେହରୁ ସୂତା ବାହାର କରି ଭଲଭାବେ ଗୁଡ଼େଇ ଦିଅନ୍ତି ଯିମିତିକି ବାହାଘର ଭୋଜିକୁ ଗଲାବେଳେ ଉପହାରକୁ ପ୍ୟାକ୍ କରି ନିଆଯାଏ । ତାପରେ ପୁରୁଷ ଡ୍ୟାନ୍ସଫ୍ଲାଇଜ୍ ପ୍ୟାକେଟ୍‌ଟିକୁ ଧରିଯାଏ ମାଈ ଡ୍ୟାନ୍ସଫ୍ଲାଇଜ୍ ପାଖକୁ । ଅନେକ ପାଶ୍ଚାତ୍ୟ ଦେଶରେ ନିୟମ ଅଛି ଯେ ଉପହାର ଦେବା ସମୟରେ ପ୍ୟାକେଟ୍‌ଟିକୁ ଖୋଲି ଦିଆଯାଏ । ଡ୍ୟାନ୍ସଫ୍ଲାଇଜ୍ ସେଇଭଳି କୋକୁନ୍ ଖୋଲି ପୋକଟିକୁ ବାହାର କରିଦିଏ । ମାଈ ପୋକର ପସନ୍ଦ ହେଲେ ଯୌତୁକ ଗ୍ରହଣ କରି ପୁରୁଷ ଡ୍ୟାନ୍ସଫ୍ଲାଇଜ୍ ସହିତ ପ୍ରେମ କରେ ।

ଆର୍ଗସ ଫିଜାଣ୍ଟର ଲମ୍ବା ଲମ୍ବା ପୁଚ୍ଛ, ସୁନ୍ଦର ବାଦାମୀ ରଂଗର ଚିତ୍ର, ଆଖି ବେଶ୍ ବଡ଼ ଓ ଗୋଲ । ବାଦାମୀ ରଙ୍ଗର ଆଖି

ଚାରିପଟେ ନୀଳ ରଂଗର ବଳୟ । ପୁଚ୍ଛରେ ଗୋଲ ଗୋଲ ଚିହ୍ନ ଠିକ୍ ଆଖି ପରି । ମାଈ ପକ୍ଷୀକୁ ଆକର୍ଷଣ କରିବା ପାଇଁ ପୁରୁଷ ପକ୍ଷୀ ପୁଚ୍ଛ ମେଲେଇ ଦିଏ ଯିମିତିକି ଅସଂଖ୍ୟ ସୁନ୍ଦର ସୁନ୍ଦର ଆଖି ସବୁ ଦେଖାଯିବ । ତାପରେ ତାର ପନ୍ଦର ଫୁଟ ଗୋଲାକାର ଏରିଆରେ ଘୂରି ଘୂରି ନାଚିବ, ଦି'ଗୋଡ଼କୁ ଗୋଟାପରେ ଗୋଟା ଭୂଇଁରେ ଆସ୍ତେ ଆସ୍ତେ ପିଟି ସୁନ୍ଦର ଶବ୍ଦ କରିବ ଓ ତା ସାଙ୍ଗେ କୋମଳ ସ୍ୱରରେ ବୋବେଇବ । ମଝିରେ ମଝିରେ ଡେଣାକୁ ମେଲେଇ ହାଇଜମ୍ପ କରିବ ।



ପକ୍ଷୀମାନଙ୍କ ପରି ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ପ୍ରେମ ପରିପ୍ରକାଶ ଏତେ ସୁନ୍ଦର ନୁହେଁ ଯଦିବା ସେମାନେ ପ୍ରେମ ପ୍ରକାଶ କରିବା ପାଇଁ ତତ୍ପର । ପୁରୁଷ ପ୍ଲାଟିପସ୍ ମାଈ ପ୍ଲାଟିପସ୍ ସାଙ୍ଗରେ ସାଙ୍ଗ ହୋଇ ପହଁରେ, ଥଣ୍ଟଠୁଁ ଲାଞ୍ଜ ପର୍ଯ୍ୟନ୍ତ ଯୋଡ଼ିହୁଏ । ପୁରୁଷ ପ୍ଲାଟିପସ୍ ବେଳେବେଳେ ମାଈ ପ୍ଲାଟିପସ୍‌ର ଲାଞ୍ଜଟାକୁ ଥଣ୍ଟରେ

ଚାପିଧରେ ଏବଂ ମାଈ ପ୍ଲାଟିପସ୍ ଫୁଙ୍କାନଳୀ ପରି ପାଣିରେ ବାରମ୍ବାର ଓଲଟେ ।

ସେଇଭଳି ପୁରୁଷ ଝିଙ୍କ ମାଈ ଝିଙ୍କ ଚାରିପଟେ ଘଣ୍ଟା ଘଣ୍ଟା ଧରି ବୁଲେ, ଫୁଲିଯାଏ, ପାଟିରେ ପବନ ଶୋଷି ଫୁଙ୍କେ, ତାପରେ ଉଭୟେ ମିଛ ଲଢ଼େଇ କରନ୍ତି, ପରସ୍ପରକୁ କାମୁଡ଼ନ୍ତି, ରାମ୍ପନ୍ତି ।

ଜଙ୍ଗଲମାନଙ୍କରେ ହାତୀମାନଙ୍କ ମଧ୍ୟରେ ନିୟମ ଟିକେ ଅଲଗା । ବେଳେବେଳେ ମାଈ ହାତୀ ବଡ଼ ବଡ଼ ଗାତ ଜାଗା ଦେଖି ତାକୁ ଆହୁରି ଗହିରା କରେ ଓ ସେଥିରେ କଞ୍ଚା କଅଁଳିଆ ତାଳପତ୍ର ଓ ଫଳ ଆଣି ରଖି ବୋବାଏ । ବୋବାଳି ଶୁଣି ପୁରୁଷ ହାତୀ ପହଁଞ୍ଚେ ।

ହମ୍ପବ୍ୟାକ୍ ବୋଲି ଏକ ତିମିମାଛ, ସେ ପାଣି ଭିତରେ ବୋବେଇଲେ ହଜାର କିଲୋମିଟର ପର୍ଯ୍ୟନ୍ତ ଶୁଭିବ । ପୁରୁଷ ଓ ମାଈ ତିମିମାଛ ଏକାସାଙ୍ଗେ ପହଁରନ୍ତି ଓ ଉଭୟଙ୍କୁ ଲାଞ୍ଜରେ ବାଡ଼ାନ୍ତି, ବେଳେ ବେଳେ ଉଭୟେ ଉଭୟଙ୍କୁ ଟେକି ପାଣି ଉପରକୁ ଫୋପାଡ଼ି ଦିଅନ୍ତି ।

ପ୍ରେମ ପାଇଁ ପଶୁପକ୍ଷୀଙ୍କର ସଜବାଜ ମଧ୍ୟ ବହୁତ ହୁଏ । ଫପିନ୍ ଚଢ଼େଇ ପ୍ରେମ ପ୍ରକାଶ କଲାପୂର୍ବରୁ ତା ଦେହର ରଙ୍ଗ ବଦଳିଯାଏ, ଥଣ୍ଟ ନାଲିଆ ହେଇଯାଏ ଆଖି ଚାରିପଟେ ଲାଲ ରଙ୍ଗର ବଳୟ ହୋଇ ତାପରେ ତ୍ରିକୋଣ ହୁଏ, ପାଦ ଦୁଇଟା ଲାଲ୍ ଚିକ୍‌ଚିକ୍ ହୋଇଯାଏ । ସେଇଭଳି ଲାପ୍‌ଲ୍ୟାଣ୍ଡ୍ ଦେଶର ବଣ୍ଟିନ୍ ପୁରୁଷ ଚଢ଼େଇ ମୁଣ୍ଡ, ବେକ, ପେଟ ସୁନ୍ଦର ନେଳିଆ ରଙ୍ଗ ହୁଏ, ଲାଞ୍ଜ ରଂଗ ମଧ୍ୟ ବଦଳିଯାଏ । ଡ୍ରେକ୍ ମାଲାଡ୍ ଚଢ଼େଇର ପୁଛ ବାଦାମୀ ରଙ୍ଗରୁ ନୀଳ ଓ ବାଇଗେଣୀ ରଙ୍ଗ ହୋଇଯାଏ । ଗ୍ରୀପଥ୍ ଚଢ଼େଇର ପୁଛ ଲାଲ୍, ନୀଳ ଓ ବାଇଗେଣୀ ରଙ୍ଗ ହୋଇଯାଏ ।

ଡାଇଉରସ୍ ଏକ ହଂସ ଜାତୀୟ ପୁରୁଷ ଚଢ଼େଇର ରଙ୍ଗ ବଦଳି ନୀଳ ସବୁଜ ଓ କଳା ମିଶ୍ରିତ ହୋଇ ମାଈ ଚଢ଼େଇଠାରୁ ଶହେଗୁଣରୁ

ଅଧିକା ଭଲହୁଏ । ଆଉ ଏକ ପ୍ରକାର ଡାଇଉରସ୍ ଚଢ଼େଇର ମୁଣ୍ଡ ହୋଇଯାଏ ନେଳିଆ ରଙ୍ଗ, ତା ତଳକୁ ହଳଦିଆ, ତାପରେ ଘନନୀଳ, ପିଠି ବାଦାମୀ, ପେଟ ଗୋଲାପୀ ଓ ପୁଚ୍ଛ ଧଳା ଅଥଚ ମାଈ ଚଢ଼େଇ ରଙ୍ଗ ପିଠି ବାଦାମୀ ଓ ବାକି ଅଂଶ ଧଳା ହୋଇଯାଏ ଓ ପ୍ରେମ ସରିବାର କିଛିଦିନ ପରେ ପୁରୁଷର ରଙ୍ଗ ପୂର୍ବପରି ଫେରିଆସେ । ବଡ଼ ଶିଙ୍ଘାରର ଶିଙ୍ଘ ଉଠେ ପ୍ରେମ ସମୟରେ । ସେଇଭଳି ବଣକୁକୁଡ଼ାର ଲାଞ୍ଜ ବହୁତ ଲମ୍ବା ହୋଇଯାଏ । ୱାଲରସ୍‌ର ଦାନ୍ତ ବଢ଼ିଯାଏ ।

ବେଳେବେଳେ ପଶୁପକ୍ଷୀମାନେ ନିଜର ଦୁର୍ବଳତା ଲୁଚେଇବା ପାଇଁ ଚାହାନ୍ତି । ଗଲ୍ ଚଢ଼େଇ ଧଳା ତକ୍‌ତକ୍ କିନ୍ତୁ କଳାମୁଣ୍ଡିଆ ଗଲ୍ ଚଢ଼େଇ ମଧ ଅଛନ୍ତି । ସେମାନେ ପ୍ରେମ ସମୟରେ ବହୁ ସମୟ ପଛକୁ ପଛ ହୋଇ ଠିଆ ହୁଅନ୍ତି କାରଣ ଲାଜରେ ନିଜର ପୋଡ଼ା ମୁହଁ ପୁରୁଷ ଓ ସ୍ତ୍ରୀ ଉଭୟ ଉଭୟଙ୍କୁ ଦେଖାଇବା ପାଇଁ ଚାହାନ୍ତି ନାହିଁ ।

❑❑

# କେତେ ରଙ୍ଗ କେତେ ଢଙ୍ଗ

ଗୋବିନ୍ଦା-ମୁକୁନ୍ଦା ଶିକାର କରିବାପାଇଁ ଯାଇ ଲଢ଼େଇ ଲାଗିଲେ, ଦୁଇଜଣଙ୍କ ଶିକାର ଗୋଟିଏ ଥିଲା, କେହି ପଛକୁ ହଟିଲେ ନାହିଁ, ଶିକାର ତା ବାଟେ ବାଟେ ଗଲା, ଅଥଚ ଏମାନଙ୍କ ଲଢ଼େଇ ସହଜରେ ସରିଲାନାହିଁ । ଉଭୟ ଉଭୟଙ୍କ ଆଡ଼କୁ ମାଡ଼ି ଆସିଲେ, ମୁହଁକୁ ମୁହଁ ଲଗେଇ ଠେଲାଠେଲି ହେଲେ, ଆଗ ଗୋଡ଼ରେ ପରସ୍ପରକୁ ରାମ୍ପୁଡ଼ିବା ପାଇଁ ଚେଷ୍ଟା କଲେ କିନ୍ତୁ ବେଶି ସମୟ ଚେଷ୍ଟା କରିବା ବିପଦ ଯେହେତୁ ଡାଳରୁ ଖସିପଡ଼ିବା ଭୟ । ଦୁଇ ଏଣ୍ଡୁଅ ଗୋବିନ୍ଦା ମୁକୁନ୍ଦାଙ୍କ ଠେଲାଠେଲି ଚାଲିଥିଲାବେଳେ ଗୋବିନ୍ଦା ଆର ଜଣଙ୍କ ଥୋଡ଼ିକୁ କାମୁଡ଼ିଦେଲା । ମୁକୁନ୍ଦା ଦେଖିଲା ଆଉ ନିସ୍ତାର ନାହିଁ ତା ଦେହ ରଙ୍ଗ ସବୁଜ କିନ୍ତୁ ସେ କଳା ପଡ଼ିଗଲା । ମୁକୁନ୍ଦାର ରଙ୍ଗ କଳା ପଡ଼ିଯିବା ଦେଖି ଗୋବିନ୍ଦା ଜାଣିଲା ଯେ ସେ ଆତ୍ମସମର୍ପଣ କଲା ତେଣୁ ଆଉ ଆକ୍ରମଣ କରିବା ଦରକାର ନାହିଁ । ଅନେକ ଏପରି ଜନ୍ତୁ ଅଛନ୍ତି ଲଢ଼େଇ ଜିତିଲେ ହାରିଥିବା ଜନ୍ତୁଟିକୁ ଦଣ୍ଡ ଦିଅନ୍ତି ନାହିଁ । ତେବେ ଲଢ଼େଇ ଜିତିଲେ ବୋଲି ଦେଖାଇବାକୁ ହେବ । ଲଢ଼େଇରେ ଜିତି ଗୋବିନ୍ଦା ତା ଦେହର ସବୁଜ ରଙ୍ଗ ପୂରାପୂରି ଦେଖେଇଲା, ତା ଦେହ ବିଶେଷକରି ଛାତି ଫୁଲେଇ ଦେଲା ଓ ଚାରିଆଡ଼କୁ ବୀର ଦର୍ପରେ ଅନେଇଲା । ବିଚରା ମୁକୁନ୍ଦା ସେଇଭଳିଆ କଳାପଡ଼ି ଗଛ ଡାଳ ତଳକୁ ଝୁଲିପଡ଼ି ରହିଗଲା ।

ବୁଝିଲ ପିଲେ ଏଣ୍ଡୁଅ ବିଭିନ୍ନ ସମୟରେ ବିଭିନ୍ନ ରଙ୍ଗ ବଦଳାଏ ଓ ଦେହର ଆକୃତି ମଧ୍ୟ ବଦଳାଏ । ସାପ ଏଣ୍ଡୁଅକୁ ଖାଇବା ପାଇଁ

ଆସିଲେ ଏଣ୍ଡୁଅ ସଁ ସଁ ଶବ୍ଦକରି ବେକ ଫୁଲେଇ ଦିଏ, ନିଃଶ୍ୱାସ ନେଇ ଦେହକୁ ବଡ଼ କରିଦିଏ । ସାରା ଦେହରେ ହଠାତ୍ ବିଭିନ୍ନ ରଙ୍ଗର ଦାଗ ବାହାରିପଡ଼େ, ମୁହଁ ଲାଲ୍ କରି ଏଣ୍ଡୁଅ ପାଟିକୁ ମେଲାକରି ସାପର ମୁକାବିଲା କରେ । ସାପ ଭାବିଥିଲା ଏଣ୍ଡୁଅକୁ ଖାଇବ ବୋଲି କିନ୍ତୁ ଏ କ'ଣ ! ଏଣ୍ଡୁଅର ନୂଆ ରଙ୍ଗ ନୂଆ ଢଙ୍ଗ ଦେଖି ସେ ଜାଣିପାରେ ନାହିଁ ଏ ଜନ୍ତୁଟା କ'ଣ, ବିଚଳିତ ହୋଇ କ'ଣ କରିବ କ'ଣ କରିବ ଚିନ୍ତା କଲାବେଳକୁ ଏଣ୍ଡୁଅ ଚମ୍ପଟ୍ । ଏଣ୍ଡୁଅ ବେଳେବେଳେ ରାଗିଯାଏ, ରାଗିଲେ ରଙ୍ଗ ବଦଳାଏ, ରଙ୍ଗ ଶେତା ପଡ଼ି ଦେହରେ ଟିପା ବାହାରି



ପାଟି ମେଲେଇ ଏଣ୍ଡୁଅ ଜଣେଇଦବା ପାଇଁ ଚାହେଁ ଯେ ସେ ରାଗିଚି । କିନ୍ତୁ ପୁରୁଷ ମାଈ ଏଣ୍ଡୁଅକୁ ଖୁସି କରିବା ପାଇଁ ସାରା ଦେହକୁ ବିଭିନ୍ନ ରଙ୍ଗରେ ଚିତ୍ରିତ କରିଦିଏ ।

ଆଉ ଗୋଟିଏ କଥା ପିଲେ—ଏଣ୍ଡୁଅର ଆଖି ବଡ଼ ବିଚିତ୍ର । ଏଣ୍ଡୁଅର ଆଖିପତା ଗୋଲ ଆକାରର, ଗୋଲାକାର ପତା ମଝିରେ ଛୋଟିଆ ଗର୍ତ୍ତରେ ଆଖିର ଯବକାଚ ଥାଏ । ଏଇ ଆଖିର ଯବକାଚ ଏଭଳି ଭାବେ ଗଠିତ ଯେ ଏଣ୍ଡୁଅ ତା ଶିକାରର ଠିକ୍ ଦୂରତା

ଜାଣିପାରେ । ପୁଣି ଦି'ଟି ଆଖି ଏଭଳିଆ ଯେ ସେ ଦି'ଟା ଅଲଗା ଅଲଗା ଭାବେ ଦୃଷ୍ଟି ପକାନ୍ତି । ତମେମାନେ ଜାଣିଚ ପିଲେ କେତେକ ପକ୍ଷୀ ସେମାନଙ୍କ ଡୋଳାକୁ ଉପର ତଳ, ବାଁ ଡାହାଣ କରି ପାରନ୍ତି ନାହିଁ ଯଥା ପେଚା । ତା ଆଖି ଦି'ଟା ଗାଡ଼ିର ଲାଇଟ୍ ପରି, ତେଣୁ ସବୁଆଡ଼କୁ ଦେଖିବା ପାଇଁ ସେ ମୁଣ୍ଡକୁ ଉପର ତଳ ବାଁ ଡାହାଣ କରେ । ଆମ୍ଭେମାନେ ଦୁଇ ଡୋଳାକୁ ଏକାସାଙ୍ଗେ ବାଁ କିମ୍ୱା ଡାହାଣ କରୁ ଆଉ ଯୋଉମାନଙ୍କର ଆଖିଡୋଳା ଭିତରେ ସମତା ନଥାଏ ତାଙ୍କୁ ଆମେ ଟେରା କହୁ । କିନ୍ତୁ ଏଣ୍ଡୁଅ ହେଉଚି ଟେରା ମାଷ୍ଟର, ସେ ବାଁ ଡୋଳାରେ ଦେଖେ ଗୋଟେ ଆଡ଼କୁ ଓ ଡାହାଣ ଡୋଳାରେ ଦେଖେ ଆଉ ଗୋଟେ ଆଡ଼କୁ । ଏଣ୍ଡୁଅର ରଙ୍ଗ ବଦଳିବା ଯିମିତି ବିଚିତ୍ର କଥା ସିମିତି ଦୁଇ ଡୋଳାକୁ ଅଲଗା ଅଲଗା ଭାବେ ଚାଳନା କରିବା, ଡୋଳାକୁ ଘୂରେଇ ସବୁ ଆଡ଼େ ଏକାସାଙ୍ଗେ ଦେଖି ପାରିବା ଓ ଶିକାରର ନିର୍ଦ୍ଦିଷ୍ଟ ଦୂରତା ଜାଣିପାରିବା ଦ୍ୱିତୀୟ ଆଶ୍ଚର୍ଯ୍ୟ କଥା । ଏହା ବ୍ୟତୀତ ଆଉ ଗୋଟିଏ ଆଶ୍ଚର୍ଯ୍ୟ କାମ କରେ ଏଣ୍ଡୁଅ ।

କ'ଣ ? ପଚାରିଲେ ପୁପୁ ଓ ଇନି ।

ଏଣ୍ଡୁଅର ଜିଭ ବଡ଼ ବିଚିତ୍ର, ରବରକୁ ଟାଣି ସାନବଡ଼ କଲାଭଳିଆ ସେ ତା ଜିଭକୁ ଚାହିଁଲେ ଲମ୍ୱେଇ ପାରିବ ଚାହିଁଲେ କମେଇ ବି ପାରିବ । ତା ଜିଭର ଅଗଟା ମୋଟା ଓ ଅଠାଳିଆ । ଶିକାରକୁ ଦେଖିଲେ ଏଣ୍ଡୁଅ ପ୍ରଥମେ ଦୂରତାଟା ନିଶ୍ଚୟ କରେ ତା ସାଙ୍ଗେ ସାଙ୍ଗେ କେତେ କୋଣରେ ଜିଭକୁ ଛାଡ଼ିବାକୁ ହେବ ତା ବିଚାର କରେ ଓ ସେଇ ଅନୁସାରେ ନିଜ ଦେହକୁ ପଛ ଦି ଗୋଡ଼ରେ ଭାର ଦେଇ ଉଠେଇ ଦିଏ ଓ ଯେତିକି ଦୂରରେ ଶିକାର ଥାଏ ଜିଭକୁ ସେତିକି ଲମ୍ୱା କରି ଦୁମ୍‌କରି ଜିଭକୁ ଛାଡ଼େ ।

ଜିଭ ଦି'ଟା କାମ କରେ—ଶିକାର ଦେହରେ ବାଜିବା ମାତ୍ରେ

ସେ ଅବଶ ଓ ଚକିତ ହୋଇପଡ଼େ ଏବଂ ତାପରେ ଜିଭର ଅଠାଳିଆ ଅଗରେ ଶିକାରଟା ଲଟକି ରହେ । କାଳେ ଛଟପଟ ହେଇ ଖସିଯିବ ଏଣ୍ଡୁଅ ଯେତିକି ସ୍ପିଡ୍‌ରେ ଜିଭ ଛାଡ଼ିଥାଏ ସେତିକି ସ୍ପିଡ୍‌ରେ ଜିଭକୁ ଫେରେଇ ନିଏ । ଜିଭ ସାଙ୍ଗେ ଶିକାରଟା ଫେରିଯାଏ ପାଟି ଭିତରକୁ ।

ଜିଭ ଛାଡ଼ିବା ଓ ଜିଭ ଭିତରକୁ ନବାରେ ଏଣ୍ଡୁଅର ଦି'ପ୍ରକାର ମାଂସପେଶୀ କାମ କରେ । ଜିଭରେ ଗୋଲ ଓ ଲମ୍ୱାଳିଆ ଆକାରରେ ଦୁଇ ପ୍ରକାର ମାଂସପେଶୀ ଥାଏ । ଛାଡ଼ିବା ସମୟରେ ଗୋଲ ମାଂସପେଶୀ ସଙ୍କୁଚିତ ହୋଇଯାଏ ଓ ଲମ୍ୱା ମାଂସପେଶୀ ସାମନାକୁ ଟାଣିହେଇଯାଏ । ଜିଭ ଛାଡ଼ିବା ଓ ବାହାରି ଆସିବା ଏତେବେଗରେ ହୁଏ ଯେ ଦେଖିବା କଷ୍ଟ । ପୁଣି ଏ ଜିଭର ଲମ୍ୱା ଦେଖିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ପାଟି ଭିତରେ ଥିବା ଜିଭଟା ଲମ୍ୱା ହୋଇଯାଇ ଏଣ୍ଡୁଅର ଦୈର୍ଘ୍ୟଠୁଁ ଦେଢ଼ଗୁଣ ପର୍ଯ୍ୟନ୍ତ ବଢ଼ିଯାଏ ଓ ପୁଣି ଫେରିଆସି ପାଟି ଭିତରେ ରହିଯାଏ ।

ଏଣ୍ଡୁଅର ଆଉ ଏକ ଢଙ୍ଗ ବେଶ୍ ମଜାଳିଆ । ଆଫ୍ରିକାରେ ଏକପ୍ରକାର ଏଣ୍ଡୁଅ ଅଛନ୍ତି ସେମାନେ ଦେଖିବା ପାଇଁ କଳା, ଦେହସାରା ଗିବିଗିବି ଓ ପାଟି ଭିତର ଧଳା ଓ ଚାରିପାଖ ଲାଲ୍ । ବିପଦ ଦେଖିଲେ ଏଣ୍ଡୁଅମାନେ ଫୁଲିଯାଇ ଦୁଇଗୁଣା ହେଇଯାଆନ୍ତି, ପାଟିଟାକୁ ବଡ଼ ଆଁ କରିଦିଅନ୍ତି । ପାଟି ଭିତର ଲାଲ ଟକଟକ ଦୃଶ୍ୟ ସାଙ୍ଗକୁ ସଁ-ସଁ ଶବ୍ଦ ଶୁଣି ଆଫ୍ରିକା ଦେଶର ଲୋକେ ଭାବନ୍ତି ଯେ ଏଣ୍ଡୁଅକୁ ଛୁଇଁବା ଭାରି ବିପଦ । କୌଣସି ସାପ ଯଦି ଚଟ୍‌କରି ଧରିଦେଲା ତେବେ ଅଲଗା କଥା କିନ୍ତୁ ମୁହାଁମୁହିଁ ଆକ୍ରମଣ କରି ଏଣ୍ଡୁଅକୁ ମାରିବା କଷ୍ଟ ।

ଆଉ ଏକ ପ୍ରକାର ଏଣ୍ଡୁଅ ଥାଆନ୍ତି ଯେଉଁମାନେ ଦାଦାଗିରି ଦେଖେଇବା ପାଇଁ ଭଲ ପାଆନ୍ତି । ସେମାନେ ଚାହାଁନ୍ତି ତାଙ୍କଠାରୁ ଦୁର୍ବଳ ଓ ସାନ ଏଣ୍ଡୁଅ ତାଙ୍କୁ ଖାତିର କରୁ । ବଡ଼ ଏଣ୍ଡୁଅ ସାନ

ଏଣ୍ଡୁଅକୁ ଦେଖିଲେ ଦେହକୁ ଟେକି ମୁଣ୍ଡକୁ ହଲାଏ ଓ ତାପରେ ରଙ୍ଗ ବଦଳାଏ । ସାନ ଏଣ୍ଡୁଅ ବଡ଼ ଏଣ୍ଡୁଅର ଆକୃତି ଓ ବିଭିନ୍ନ ରଙ୍ଗ ଦେଖି କଳନା କରିନିଏ (ନାଇଁରେ ବାପା ଯାକୁ ପାରିହେବ ନାହିଁ) । ବଡ଼ ଏଣ୍ଡୁଅର ଦାଦାଗିରି ସେ ମାନିଯାଏ, ବଡ଼ ଏଣ୍ଡୁଅ ପାଟି ମେଲା କରିଥାଏ ସାନ ଏଣ୍ଡୁଅ ମୁଣ୍ଡ ତଳକୁ କରିଦିଏ । ବଡ଼ ଏଣ୍ଡୁଅ ଦେହର ଚକ୍‌ଚକ୍ ରଙ୍ଗ ଦେଖାଏ ସାନ ଏଣ୍ଡୁଅମୁଣ୍ଡ ଶେତା ପଡ଼ିଯାଏ । ବାସ୍ ଆଉ ଲଢ଼େଇ ଦରକାର ପଡ଼େନାହିଁ ।

ଏଣ୍ଡୁଅର ଏତେ ବୁଦ୍ଧି ? ଆଶ୍ଚର୍ଯ୍ୟ ହେଇ ପଚାରିଲେ ପୁପୁ ଓ ଇନି ।

❑❑

# ଚାଲଭାଇ ଯିବା

ବାପାଙ୍କ ସାଙ୍ଗେ ପୁପୁ, ଇନି ଚିଲିକା ବୁଲି ଯାଇଥିଲେ, ଦୂର ଦେଶମାନଙ୍କରୁ ଆସିଥିବା ଅନେକ ଚଢ଼େଇ ଦେଖିଥିଲେ । ପୁପୁ ଇନିଙ୍କ ପ୍ରଶ୍ନ ଥିଲା—ଖାଲି କ'ଣ ଚଢ଼େଇମାନେ ଦୂରଦେଶକୁ ଯାଆନ୍ତି । ବାପା ମନେ ପକେଇଲେ—ମୁଁ ପରା ତୁମକୁ ସାଲମନ୍ ମାଛ କଥା କହିଥିଲି, ମନେ ନାହିଁ ? ତେବେ ବହୁତ ରକମର ମାଛ ଜୀବଜନ୍ତୁ ଅଛନ୍ତି ଯେଉଁମାନେ ଦୂରସ୍ଥାନକୁ ଯାଆନ୍ତି ଓ ଫେରିଆସନ୍ତି । ସାଲମନ୍ ମାଛ ଭଳି ଇଲ୍‌ମାଛ ସରୁ ଆଉ ଲମ୍ବା, ଦେଖିବାକୁ ସାପଭଳି । ସେମାନେ ହଜାର ହଜାର କିଲୋମିଟର ଚାଲିଯାଆନ୍ତି । ସାଲମନ୍ ମାଛ ନଈରୁ ଆସେ ସମୁଦ୍ରକୁ ଓ ଫେରିଆସେ ନଈକୁ କିନ୍ତୁ ଇଲ୍‌ମାଛ ସମୁଦ୍ରରୁ ଯାଏ ନଈକୁ ଓ ନଈରୁ ଫେରିଆସେ ସମୁଦ୍ରକୁ । ଆମେରିକାର ଦକ୍ଷିଣରେ ସାଲ୍‌ଗାସୋ ସମୁଦ୍ର ଯାହାର ଆଖପାଖରେ ପଶ୍ଚିମ ଭାରତ ଦ୍ୱୀପପୁଞ୍ଜ ଅବସ୍ଥିତ । ସମୁଦ୍ରର ପନ୍ଦର ଶହରୁ ଦୁଇହଜାର ଫୁଟତଳେ ଇଲ୍‌ମାଛ ଅଣ୍ଡାଦିଏ । ଅଣ୍ଡାରୁ ଲାର୍ଭା ହୁଏ, ସେଣ୍ଟିମିଟରରୁ ସାନ ଲାର୍ଭା ସମୁଦ୍ରରୁ ଚାଲନ୍ତି ଦୂରସ୍ଥାନକୁ, କେହି କେହି ପଶ୍ଚିମ ଦ୍ୱୀପପୁଞ୍ଜରୁ ଭୂମଧ୍ୟସାଗରରେ ପଶନ୍ତି ଏବଂ ସ୍ପେନ୍, ଫ୍ରାନ୍‌ସ, ଗ୍ରୀସ୍‌ର ବିଭିନ୍ନ ନଦୀକୁ ଯାଆନ୍ତି, ଦଳେ ଇଂଲଣ୍ଡକୁ ଯାଆନ୍ତି ଆଉଦଳେ ନରୱେ, ସୁଇଡ଼େନ୍, ଫିନ୍‌ଲ୍ୟାଣ୍ଡର ନଦୀକୁ ଯାଆନ୍ତି ଓ ସବୁଠୁଁ ଦୂର ପଥିକ ରୁଷିଆର ନଦୀଭିତରକୁ ପଶନ୍ତି । ଏମାନେ ହେଲେ ପୂର୍ବ ପଥିକ କିନ୍ତୁ ପଶ୍ଚିମ ପଥିକମାନେ ଆମେରିକା, କାନାଡ଼ା, ଗ୍ରୀନ୍‌ଲ୍ୟାଣ୍ଡ ନଦୀରେ ପଶନ୍ତି । ସୁଦୂର କୃଷ୍ଣସାଗରକୁ ପଶିବାର ମଧ୍ୟ ନଜିର ଅଛି ।

ଲାର୍ଭାମାନେ ପହଁରୁଥିବା ସମୟରେ ରାସ୍ତାରେ ଖାଦ୍ୟ ଖାଆନ୍ତି, ତାଙ୍କ ଆକୃତି ବଢ଼େ ଓ ତିନିଚାରି ମିଲିମିଟର ଲମ୍ବାର ଲାର୍ଭା ନଈରେ ପହଞ୍ଚିଲା ବେଳକୁ ଦୁଇ ତିନିବର୍ଷ ଲାଗିଯାଏ ଓ ଲମ୍ବା ସାଢ଼େ ତିନିଫୁଟ ପାଖାପାଖି ହୋଇଯାଏ । ନଈରେ ପହଞ୍ଚିଲା ପୂର୍ବରୁ ଇଲ୍‌ମାଛର କଣ୍ଟା ସହିତ ଦିଶେ, ନଈରେ ପଶିବାର କିଛିମାସ ପରେ ଦେହ ହଳଦିଆ ହୋଇଯାଏ ଓ ତାପରେ ରଙ୍ଗ ରୂପାପରି ଚକ୍‌ଚକ୍ କରେ । ଇଲ୍‌ମାଛ ଯୌବନ ପ୍ରାପ୍ତିହେଲାବେଳକୁ ଅଢ଼େଇବର୍ଷ ଲାଗିଯାଏ । ବେଳେବେଳେ ସମୁଦ୍ରରେ ପହଁରୁ ପହଁରୁ ଛଅ ସାତବର୍ଷ ବୟସ ହୋଇଯାଏ । ଅନେକ ଇଲ୍‌ମାଛ ସାତହଜାର କିଲୋମିଟର ଅଧିକା ଦୂରତା ଅତିକ୍ରମ କରିବାର ପ୍ରମାଣ ଅଛି । ସାଲମନ ମାଛ ନଈରେ ଗଲାସମୟରେ ପଥର ଉପରେ ଡେଇଁଡେଇଁ ଜଳପ୍ରପାତ ଅତିକ୍ରମ କରେ କିନ୍ତୁ ଇଲ୍‌ମାଛର କୌଶଳ ଅଲଗା ପ୍ରକାର । ଜଳପ୍ରପାତକୁ ଡେଇଁ ଅତିକ୍ରମ କରିବାର କଷ୍ଟ ନକରି ସେ କୂଳକୁ ପଳେଇ ଆସେ ଓ ସାପପରି ମାଟିରେ ଘୁଷୁରି ଘୁଷୁରି ଜଳପ୍ରପାତର ସେପାଖକୁ ଚାଲିଗଲା ପରେ ପୁଣି ପାଣିରେ ପଶିଯାଏ । ନଈରେ କିମ୍ବା ପୋଖରୀରେ ବହୁବର୍ଷ ରହିବାପରେ ଅଣ୍ଡାଦେବା ସମୟ ହେଲେ ସମୁଦ୍ରକୁ ଫେରିଆସେ ଯେଉଁଠି ସେମାନେ ଅଣ୍ଡା ଦିଅନ୍ତି ଓ ଅଣ୍ଡା ଦେବା ପରେ ମାଛଟି ମରିଯାଏ ।

ବହୁତ ବଡ଼ବଡ଼ ମାଛ ମଧ ସମୁଦ୍ର ଯାତ୍ରାକରନ୍ତି । ତିମିମାଛମାନେ ହଜାର୍ ହଜାର ମାଇଲ ଅତିକ୍ରମ କରି ଦୂରସ୍ଥାନକୁ ଯାଆନ୍ତି । ଉତ୍ତର ମେରୁରୁ ନୀଳ ତିମିମାଛ ଶୀତଦିନେ ବାହାରିଆସେ ଓ ଇଉରୋପ କୂଳ ଅତିକ୍ରମ କରି ଆଫ୍ରିକା କୂଳକୁ ଆସେ ଓ ପୁଣି ଫେରିଯାଏ । ସମୁଦ୍ର ସିଲ୍ ନିର୍ଦ୍ଦିଷ୍ଟ ସ୍ଥାନକୁ ସବୁବର୍ଷ ଯାଏ ନାହିଁ କିନ୍ତୁ ଶହ ଶହ କିଲୋମିଟର ଦୂରସ୍ଥାନକୁ ଚାଲିଯାଏ । ସମୁଦ୍ର ୱାରଲସ୍ ଦୂରସ୍ଥାନକୁ ଯିବାପାଇଁ ବରଫ ଖଣ୍ଡର ପିଛା କରେ ।

ବେଳେବେଳେ ବରଫଖଣ୍ଡ ଉପରେ ସେ ଚଢ଼ି ଶୋଇରହେ ଓ ବରଫଖଣ୍ଡ ତାକୁ ଟାଣିନେଇଯାଏ ବହୁଦୂର ପର୍ଯ୍ୟନ୍ତ । ନାଲିଆ ଓ ନୀଳତିମି ଆଲାସ୍କା ଅଞ୍ଚଳରୁ ଶୀତଦିନେ ଚାଲିଆସେ ଆମେରିକାର କୂଳକୁ । କେହି କେହି ପଳେଇ ଆସନ୍ତି ଆଫ୍ରିକା କୂଳକୁ, ଅନ୍ୟକେହି କ୍ୟୁବା ଅଞ୍ଚଳକୁ । ଶୀତଦିନେ ଖାଦ୍ୟପଦାର୍ଥ ଅଭାବ ହୁଏ, ପାଣି ସ୍ଥାନେ ସ୍ଥାନେ ଜମାଟ ବାନ୍ଧିଯାଏ, ତେଣୁ ଉପଯୁକ୍ତ ସମୟରେ ତିମିମାଛ ଚାଲିଯାଏ ଅପେକ୍ଷାକୃତ ଉଷ୍ଣମ ପାଣି ଓ ଖାଦ୍ୟ ଯୋଉଠି ବେଶି ମିଳେ ।

ଏଇ ମାଛମାନେ ଏକୁଟିଆ ଯାଆନ୍ତି ?—ପଚାରିଲା ଇନି ।

—ନା, ସେମାନେ ଦଳଦଳ ହୋଇ ବହୁସଂଖ୍ୟାରେ ଯାଆନ୍ତି ।

—ଆଉ କିଏ ଏମିତି ଯାଆନ୍ତି ?

ଆଉ ଗୋଟିଏ ଉଦାହରଣ ହେଉଛି ବଲ୍‌ଗା ହରିଣ, ଯେଉଁମାନେ ତୁନ୍ଦ୍ରା ଅଞ୍ଚଳରେ ରହନ୍ତି । ଶୀତଦିନ ଆସିଲେ ବଲ୍‌ଗା ହରିଣମାନେ ଘାସ ଓ ଶିଉଳି ପାଆନ୍ତି ନାହିଁ ଓ ଏକାସାଙ୍ଗେ ହଜାର ହଜାର ସଂଖ୍ୟାରେ ତୁନ୍ଦ୍ରାର ବରଫ ଅଞ୍ଚଳରୁ ସବୁଜ ଅଞ୍ଚଳକୁ ଆସନ୍ତି । ଶହ ଶହ ମାଇଲ୍ ଅତିକ୍ରମ କରି ସେମାନେ ଆସନ୍ତି ଖାଦ୍ୟ ତଲାସରେ ।

ସେମାନେ କେତେ ସଂଖ୍ୟାରେ ଆସନ୍ତି ?—ପଚାରିଲା ପୁପୁ ।

ବେଳେବେଳେ ଅଶୀନବେ ହଜାର ବଲଗା ହରିଣ ଏକାସାଙ୍ଗେ ଆସିବାର ଜଣାଯାଇଛି । ଆଫ୍ରିକାର ସେରେଙ୍ଗଟି ଅଞ୍ଚଳରେ ଏଇ ଜୀବଜନ୍ତୁଙ୍କର ଦୂରଯାତ୍ରା ଖୁବ୍ ସୁନ୍ଦର ଭାବେ ଦେଖିହୁଏ । ସେରେଙ୍ଗିଟିରେ ନୁ ଜାତୀୟ ହରିଣ, ଜେବ୍ରା ମିଶି ପ୍ରାୟ ପାଞ୍ଚଲକ୍ଷ ଜନ୍ତୁ ଦକ୍ଷିଣ ସେରେଙ୍ଗିଟି ଛାଡ଼ି ଏକାସାଙ୍ଗେ ଯାଆନ୍ତି ଉତ୍ତର ସେରେଙ୍ଗେଟିକୁ । ଉତ୍ତର ସେରେଙ୍ଗିଟିରେ ସେତେବେଳେ ବେଶ୍ ସବୁଜ କ୍ଷେତ୍ର, ପାଣି ବି ଅଛି । ସେଇଠି ଜନ୍ତୁଗୁଡ଼ିକ ରହନ୍ତି ବର୍ଷାଦିନ

ପର୍ଯ୍ୟନ୍ତ । ବର୍ଷା ଆସିବା ପୂର୍ବରୁ ଜେବ୍ରା ଓ ହରିଣମାନେ ଏକା ସାଙ୍ଗେ ଫେରିଆସନ୍ତି । ଯିବାଆସିବା ସମୟରେ ମଧ ଅନେକ ଛୁଆଜନ୍ମ କରନ୍ତି । ଛୁଆଜନ୍ମ ହେଲାମାତ୍ରେ ଅନେକ ହରିଣ ତାକୁ ଘେରି ରହନ୍ତି, ମା ହରିଣ ଛୁଆକୁ ଚାଟେ ଯାହାଦ୍ୱାରା କି ଛୁଆ ମା'ର ଦେହ ବାସ୍ନା ସାଙ୍ଗେ ପରିଚିତ ହୋଇଯାଏ । ଗଧିଆ ବିଲୁଆ ଦୂରରୁ ଥାଇ ନିଘା ରଖିଥାନ୍ତି ଟିକିଏ ଅସତର୍କ ହେଲେ ଦୌଡ଼ିଆସି ଛୁଆକୁ ଟେକି ନେଇଯିବେ । କିନ୍ତୁ ନୁମାନେ ସବୁଆଡ଼େ ନିଘା ରଖିଥାନ୍ତି, ଅଧଘଣ୍ଟେ ମାତ୍ର ଜଗିବା କଥା । ଅଧେଘଣ୍ଟେ ହେଲାମାତ୍ରେ ଛୁଆ ଉଠିପଡ଼ି ମା' ପଛେ ପଛେ ଚାଲେ ଓ ଯାତ୍ରା ଚାଲୁରହେ ।

ଦକ୍ଷିଣ ଆଫ୍ରିକାର ହରିଣକୁ ସ୍ପ୍ରିଙ୍ଗବକ୍ କହନ୍ତି । ୧୯୮୬ ମସିହାରେ ସେ ହରିଣମାନେ ଖରାଦିନ ପୂର୍ବରୁ ଯାଉଥିଲେ ଦୂରସ୍ଥାନକୁ । ସେମାନଙ୍କ ସଂଖ୍ୟା ଏତେ ଥିଲା ଯେ ଦୁଇଶହ କିଲୋମିଟର ଲମ୍ବା ଓ କୋଡ଼ିଏ କିଲୋମିଟର ଓସାର ଆକାରରେ ସେମାନେ ଯାଉଥିଲେ, ଅନ୍ଦାଜ ଲଗେଇଲେ ଦଶଲକ୍ଷରୁ ବେଶି ହେବ ବୋଲି କହିହେବ । ଆସ୍ତେ ଆସ୍ତେ ଜୀବଜନ୍ତୁଙ୍କ ସଂଖ୍ୟା କମିଗଲା, ଆମେ ମଣିଷମାନେ ନିର୍ଦ୍ଦୟ ହୋଇ ତାଙ୍କୁ ମାରିଲୁ । ଏବେ ଦକ୍ଷିଣ ଆଫ୍ରିକାରେ ସ୍ପ୍ରିଙ୍ଗବକ୍ଙ୍କ ସଂଖ୍ୟା ବଢ଼ିଲାଣି କାରଣ ସରକାର ଓ ସର୍ବସାଧାରଣ ସେମାନଙ୍କର ସୁରକ୍ଷା କରନ୍ତି ଓ ହଜାର ହଜାର ସଂଖ୍ୟାରେ ସେମାନେ ଯାଆନ୍ତି ଦୂର ସ୍ଥାନକୁ ।

ଏସିଆର ଷ୍ଟେପସ୍ ଅଞ୍ଚଳରେ ସାଇଗା ବୋଲି ଏକ ହରିଣ ରହନ୍ତି, ସାଇଗାଗୁଡ଼ିକ ବେଶ୍ ଛୋଟ, ଦେଖିବାକୁ ମେଣ୍ଢାପରି । ଖାଇବା ପଦାର୍ଥ ତଲାସରେ ସେମାନେ ଶୀତଦିନେ ହଜାର ହଜାର ସଂଖ୍ୟାରେ ଯାଆନ୍ତି ଦୂରସ୍ଥାନକୁ ।

ଆଚ୍ଛା ବାପା, ପୋକମାନେ ଯାଆନ୍ତି କି ନାହିଁ ?—ପଚାରିଲା ଇନି ।

ହଁ, ପୋକମାନେ ବି ଯାଆନ୍ତି । ଉତ୍ତର କାନାଡ଼ାରୁ ମୋନାର୍କ ପ୍ରଜାପତିମାନେ ଲକ୍ଷଲକ୍ଷ ସଂଖ୍ୟାରେ କାନାଡା ଅତିକ୍ରମ କରି, ଆମେରିକା ଦେଶ ଅତିକ୍ରମ କରି ମେକ୍ସିକୋରେ ପହଞ୍ଚନ୍ତି । ସେଇଠି ଶୀତଦିନେ ଗଛଉପରେ ଶୋଇଯାଆନ୍ତି । ଶୀତ ସରିଲେ ଫେରନ୍ତି ଓ ରାସ୍ତାରେ ରହି ରହି ଅଣ୍ଡା ଦିଅନ୍ତି । ଆଶ୍ଚର୍ଯ୍ୟର କଥା ଯେଉଁ ପ୍ରଜାପତି ଯାଇଥିଲା ସେ ସିନା ଫେରିଆସିବ କିନ୍ତୁ ଅଣ୍ଡାରୁ ଛୁଆହୋଇ ସେ ବି ଉଡ଼ିଚାଲେ କାନାଡ଼ା ଆଡ଼କୁ । ଫେରିବା ବାଟରେ ନୂତନ ପ୍ରଜାପତିଟି ପୁଣି ଅଣ୍ଡାଦିଏ ଓ ତା ଛୁଆ ଉଡ଼ିଚାଲେ କାନାଡ଼ା ଆଡ଼କୁ । ଅର୍ଥାତ୍ ଜେଜେବାପା ଯଦି କାନାଡାରେ ଛାଡ଼ିଯାଇଥିବା ଛୁଆ ମେକ୍ସିକୋ ଫେରିବା ବାଟରେ ମରେ (ବୟସ ହେବାରୁ), ତା'ପୁଅ ମରି ଓ ଶେଷକୁ ନାତି ଫେରିଆସେ ଜନ୍ମସ୍ଥାନକୁ । ହଜାର ହଜାର କିଲୋମିଟର ରାସ୍ତା ପ୍ରଜାପତିମାନେ କେମିତି ଖୋଜି ବାହାର କରନ୍ତି ଓ ପୁଣି ଫେରି ଆସନ୍ତି ତା ବଡ଼ ଆଶ୍ଚର୍ଯ୍ୟର କଥା । ଆଫ୍ରିକାରେ ଏକପ୍ରକାର ପିମ୍ପୁଡ଼ି, କଳା ଓ ବେଶ୍ ବଡ଼ । ଲକ୍ଷ ଲକ୍ଷ ସଂଖ୍ୟାରେ ସେମାନେ ବାହାରନ୍ତି ନୂଆ ସ୍ଥାନକୁ । ରାସ୍ତାରେ ଯାହା ପାଆନ୍ତି ଖାଇଯାଆନ୍ତି । ପିମ୍ପୁଡ଼ିମାନେ ଆସିବାର ଦେଖିଲେ ଜୀବଜନ୍ତୁ ରାସ୍ତାଛାଡ଼ି ପଳାନ୍ତି । ଶହଶହ ମାଇଲ୍ ଅତିକ୍ରମ କରି ପିମ୍ପୁଡ଼ିମାନେ ବାଟରେ ଦଳଦଳ ବସାବାନ୍ଧି ରହିଯାଆନ୍ତି ।

ପିମ୍ପୁଡ଼ି, ପ୍ରଜାପତି ବହୁତ ଛୋଟ, ସେମାନେ ଲକ୍ଷଲକ୍ଷ ସଂଖ୍ୟାରେ କିଭଳି ଏକାସାଙ୍ଗେ ନିଷ୍ପତ୍ତି ନିଅନ୍ତି, ଗୋଟିଏ ମାର୍ଗରେ ଯାଆନ୍ତି ଓ ଏକାସାଙ୍ଗେ ଫେରନ୍ତି ଭାବିଲେ ଭାରି ଆଶ୍ଚର୍ଯ୍ୟ ଲାଗେ ।

□□



# ପେଚାର କରାମତି

ଅନେକ ଜୀବଜନ୍ତୁ ନିଜକୁ ରକ୍ଷା କରିବା ପାଇଁ ରାତିରେ ବସାରୁ କିମ୍ବା ଗାତରୁ ବାହାରନ୍ତି ନାହିଁ। ସେଥିରୁ କେତେକ ବିଭିନ୍ନ ପ୍ରକାର ଛଳନା କରନ୍ତି। ଶିକାରୀ ପଶୁପକ୍ଷୀମାନେ ମଧ କିଛି କମ୍ ନୁହଁନ୍ତି, ସେମାନେ ଏଭଳିଭାବେ ଛଳନା କରନ୍ତି ଯେ ତାଙ୍କ ଲୁଚିବା କେହି ଜାଣିପାରନ୍ତିନି। ପେଚାମାନେ ରାତିରେ ଶିକାର କରନ୍ତି ତେଣୁ ଦିନବେଳେ ଚୁପ୍‌ଚାପ୍ ବସି ରହନ୍ତି କାରଣ ଦିନବେଳେ ତାଙ୍କ ପ୍ରତି ବିପଦ ଛଞ୍ଚାଣ ଓ ବାଜପକ୍ଷୀଠାରୁ। ସେମାନେ କୋରଡ଼ରେ, ଗାତରେ, ଘନ ବୃକ୍ଷଲତାରେ ଲୁଚି ରହନ୍ତି। ଦିନବେଳେ ପେଚାଙ୍କୁ ଅନ୍ୟ ଚଢ଼େଇମାନେ ଗୋଡ଼ାନ୍ତି ଯଦିବା ଚଢ଼େଇମାନଙ୍କୁ ମାରିବା ପାଇଁ ସେ ସକ୍ଷମ। କିନ୍ତୁ ସେମାନେ ଏକତ୍ରିତ ହେଲେ ପେଚା କଥା ଛାଡ଼ ଛଞ୍ଚାଣ ବାଜପକ୍ଷୀ ମଧ ଡରି ଯାଆନ୍ତି। କାଉପଲ ଛଞ୍ଚାଣଙ୍କୁ ତଡ଼ିବା ଅନେକ ସମୟରେ ଦେଖାଯାଏ, ସେଇଭଳି ବୃକ୍ଷଡାଳରେ ବସିଥିବା ପେଚାଙ୍କୁ ମଧ ସେମାନେ ଗୋଡ଼ାନ୍ତି। ସେମାନଙ୍କଠୁଁ ରକ୍ଷା ପାଇବା ପାଇଁ ପେଚା ଦିନବେଳେ ଲୁଚି ରହେ। ଯେଉଁ ଜନ୍ତୁମାନେ କେବଳ ରାତିରେ ବାହାରନ୍ତି ସେମାନଙ୍କୁ ଶିକାର କରିବା ବ୍ୟବସ୍ଥା ପ୍ରକୃତି ନ କରିଥିଲେ ସେମାନଙ୍କ ସଂଖ୍ୟା ବହୁତ ବଢ଼ିଯାଆନ୍ତା—ପେଚା ସେମାନଙ୍କୁ ଶିକାର କରି ଆମ୍ଭମାନଙ୍କର ବହୁତ ଉପକାର କରେ।

ପେଚା କେତେରକମ ଜାଣିଚ ?

ଦଶ ପନ୍ଦର ରକମର ହେଇଥିବ—ପିଲେ ଅନୁମାନ କଲେ।

ନା, ଅତିକମ୍‌ରେ ଶହେ ତିରିଶ ରକମର ପେଚା ଅଛନ୍ତି ସାରା

ପୃଥିବୀରେ । ଘରଚଟିଆ ସାଇଜର ପେଚାଠୁଁ ଆରମ୍ଭ କରି ବିରାଟ ଇଗଲ ଭଳି ପେଚା ମଧ୍ୟ ଦେଖିବାକୁ ମିଳନ୍ତି । ସମସ୍ତେ ରାତିରେ ଶିକାର କରିନ୍ତି କେବଳ ତୁନ୍ଦ୍ରାଦେଶର ପେଚାଙ୍କୁ ଛାଡ଼ି । ତୁନ୍ଦ୍ରାଦେଶର ପେଚାଙ୍କୁ ଦିନରେ ଶିକାର କରିବାକୁ ପଡ଼େ କାରଣ ଧଳାଭାଲୁକୁ ଛାଡ଼ି ଆଉ କେହି ରାତିରେ ବାହାରନ୍ତି ନାହିଁ । ରାତିରେ ଶିକାର କରୁଥିବା ପେଚାମାନଙ୍କ ମଧ୍ୟରୁ ଛୋଟ ପେଚା (ଏଲ୍‌ଫ ପେଚା) ପ୍ରଜାପତି ଓ ପୋକ ଖାଇ ସନ୍ତୁଷ୍ଟ ହୁଏ ଅଥଚ ଇଗଲ ପେଚା ଛୋଟ ହରିଣ ମାଙ୍କଡ଼ ମାରିଦିଏ । ଏମିତି ବି ପେଚା ଅଛନ୍ତି ଯେଉଁମାନେ ରାତିରେ ପାଣିରୁ ମାଛ ମାରନ୍ତି ।

ପେଚାମାନଙ୍କର ଆଖି ମୁଣ୍ଡର ସାମ୍ନାରେ, ଆଖିର ଗଠନ ଏମିତି ଯେ ଦୂରତା ସେମାନେ ଠିକ୍ ମାପି ପାରନ୍ତି । ସାଧାରଣତଃ ପକ୍ଷୀମାନଙ୍କ ପାଇଁ ଏହା ନିହାତି ଦରକାର ନହେଲେ ଉଡୁଥିବା କିମ୍ବା ଧାଉଁଥିବା ଶିକାରକୁ ଧରିହବ କେମିତି ? ଅନେକ ପକ୍ଷୀମାନଙ୍କର ଆଖି ଓ ବେକର ଗଠନ ଏପରି ଯେ ସେମାନେ ଆଗପଛ ସବୁ ଦେଖିପାରନ୍ତି । ପଛ ଦେଖିବା ନିହାତି ଦରକାର କାରଣ ଅଧିକାଂଶ ଆକ୍ରମଣ ପଛରୁ ହୁଏ । ପେଚାର ଆଖି ଏପରି ଯେ ଦୃଷ୍ଟି କେବଳ ସାମ୍ନାକୁ କିନ୍ତୁ ସେ ବେକ ପଛକୁ ମୋଡ଼ିପାରେ ’ତେଣୁ ପେଚା ଶିକାର ଓ ଆକ୍ରମଣକାରୀ ଉଭୟଙ୍କୁ ଦେଖିପାରେ । ପେଚାର ଆଖି ଦି’ଟା ମୁଣ୍ଡ ତୁଳନାରେ ବଡ ଅଥଚ ସ୍ଥିର । ଡୋଳା ଏପଟ ସେପଟ ହେଇ ପାରେନାହିଁ ତେଣୁ ପେଚା ସବୁବେଳେ ବେକ ତଳ ଉପର ଏପଟ ସେପଟ କରୁଥାଏ । ସତେ ଯେମିତି ମୁଣ୍ଡ ଟୁଙ୍ଗାରୁଚି । ପୁଣି ତା ଆଖି ଏମିତି ଯେ ବେଶି ଆଲୁଅ ହେଲେ କମିଯାଏ ଓ ଅନ୍ଧାରରେ ପୂରାପୂରି ଖୋଲିଯାଏ । କିଟିକିଟି ଅନ୍ଧାରରେ ମଧ୍ୟ ପେଚା ଦେଖିପାରେ ।

କେବଳ ଦେଖିଲେ ଶିକାର କରିହବ ନାହିଁ ଶୁଣିବା ମଧ୍ୟ ଦରକାର । ପେଚାର ଶୁଣିବା ଶକ୍ତି ପ୍ରବଳ । ଜଙ୍ଗଲରେ ଘାସ ଗଛ

ଭିତର ଦେଇ ଯେତେବେଳେ ମୂଷାଟିଏ ଯାଏ ତା ପୁଣି ଅନ୍ଧାରରେ, ପେଚା ଜାଣେ କେମିତି ? ତା କାନ ଦି'ଟା ବଡ ବିଚିତ୍ର ଭାବେ ଖଞ୍ଜା ହୋଇଚି । ଆମର କାନ ମୁଣ୍ଡର ଦୁଇପାଖରେ ସମାନ ଭାବରେ ଥାଏ କିନ୍ତୁ ପେଚାର ଦୁଇକାନର ସମତା ନଥାଏ । ଅର୍ଥାତ୍ ଯଦି ଗୋଟିଏ କାନ ଆଖିଠାରୁ ଇଞ୍ଚେ ପଛକୁ ଓ ଟିକେ ତଳକୁ ତ ଆରକାନଟି ଆଖିଠାରୁ ଅଧିକ ଦୂରକୁ ଓ ଟିକେ ଉଚ୍ଚକୁ । ତାଦ୍ୱାରା ପେଚା ଆଗପଛ ଉଭୟ ଆଡୁ ଶୁଣିପାରେ ।

ସାମାନ୍ୟ ଖୁଟ୍ କରି ଶବ୍ଦ ହେଲେ, ପେଚା ଶବ୍ଦଟା କୋଉ ଦିଗରୁ ଆସୁଚି ଜାଣିପାରେ ଓ ଶବ୍ଦ ଅନୁସାରେ ବେକକୁ ଯଥାଭାବେ ବଙ୍କାକରି ନିଘାକରେ । ଶିକାର କୋଉଠି ଅଛି ଜାଣିଲା ମାତ୍ରେ ପେଚା ଘନ ଅନ୍ଧକାର ମଧ୍ୟରେ ଉଡେ କିନ୍ତୁ ଉଡ଼ିବା ପାଇଁ ସଂପୂର୍ଣ୍ଣ ନିରବତା ରକ୍ଷା କରେ । ସାଧାରଣତଃ ପକ୍ଷୀମାନେ ଉଡିଲେ ଡେଣା ଓ ପର ଫଡ୍‌ଫଡ୍ ଶବ୍ଦ କରି ଉଡ଼ନ୍ତି କିନ୍ତୁ ପେଚାର ଡେଣା ଓ ପର ଏଭଳି ଯେ ସେ ଉଡ଼ିଲେ ଆଦୌ ଶବ୍ଦ ହୁଏନା । ଅନ୍ୟପକ୍ଷୀମାନେ ଯଥା ହଂସ ଓ ଇଗଲ ଉଡ଼ିଲା ସମୟରେ ବହୁତ ଶବ୍ଦ ହୁଏ ।

ଶିକାରକୁ ସେ ଧରେ ଗୋଡ଼ରେ । ତା'ର ଗୋଡ଼ରେ ଚାରିଟା ଆଙ୍ଗୁଠି, ଗୋଡ଼ର ମାଂସପେଶୀ ଭାରି ଶକ୍ତ ପୁଣି ଆଙ୍ଗଠିରୁ ତିନୋଟି ସାମ୍ନାକୁ, ଗୋଟିଏ ପଛକୁ ଓ ଆଙ୍ଗୁଠିର ନଖ ବେଶ୍ ଟାଣ ଅଧା ଗୋଲାକୃତି ଓ ଛୁଞ୍ଚିଭଳିଆ ତୀକ୍ଷ୍ଣ । ପେଚା ଉଡିବା ସମୟରେ ଦିଟା ନଖ ସାମ୍ନାକୁ, ଦି'ଟା ନଖ ପଛକୁ କିନ୍ତୁ ଡାଳରେ ବସିବା ସମୟରେ ତିନିଟା ନଖ ଆଗକୁ ଓ ଗୋଟିଏ ନଖ ପଛକୁ ରହେ । ଜନ୍ତୁକୁ ଧରିବା ସମୟରେ ଦୁଇ ଗୋଡ଼ରେ ଆଠଟି ନଖ ବ୍ୟବହାର କରି ଏମିତି ଟାଣ ଭାବେ ଚିପିଦିଏ ଯେ ଶିକାରଟି ସାଙ୍ଗେ ସାଙ୍ଗେ ମରିଯାଏ । ପେଚାର ଥଣ୍ଟ ବ୍ୟବହାର ହୁଏ ଜନ୍ତୁକୁ ଚିରି ଖାଇବା ପାଇଁ; ମାରିବା ପାଇଁ ଏହାର କମ୍ ବ୍ୟବହାର ହୁଏ ।

ପେଚାର ସାହସ କମ୍ ନୁହେଁ, ସାପକୁ ମଧ୍ୟ ସେ ମାରିଖାଏ ଯଦିବା ସେ ଜାଣିଚି ସାପ ତା ଦେହରେ ଗୁଡ଼େଇ ହେଇଯିବ । ସାପକୁ ଦେଖିଲେ ପେଚା ଲକ୍ଷ୍ୟ କରେ ତା ମୁଣ୍ଡକୁ, ଥରେ ମୁଣ୍ଡକୁ ଗୋଡ଼ରେ ଚିପିଦେଲେ ସାପ ମରିଯାଏ । ବେଳେବେଳେ ଯେହେତୁ ସାପ ତୀବ୍ର ଗତିରେ ତେଢ଼େଇ ତେଢ଼େଇ ଯାଏ ପେଚା ତା ମୁଣ୍ଡକୁ ଲକ୍ଷ୍ୟ କରି ଡାଇଭ୍ ମାରିବା ସତ୍ତ୍ୱେ ପିଠି କିମ୍ବା ଲାଞ୍ଜକୁ ଧରେ । ସାପ ଚମକି ପଡ଼ି ଓଲଟି ପଡ଼େ ଓ ଗୁଡ଼େଇ ହବା ପାଇଁ ଚେଷ୍ଟା କରେ, ଆଉ ଗୋଡ଼ରେ ପେଚା ତା ବେକକୁ ଚିପିଦିଏ, ସର୍ବଶେଷରେ ଥଣ୍ଟ ବ୍ୟବହାର କରି ସାପକୁ ଚିପେ । ଅଧିକାଂଶ ସମୟରେ ସାପ ମରେ ଓ ପେଚାର ବେଶ୍ କିଛି ଦିନର ଖାଦ୍ୟ ମିଳିଯାଏ ।

ପେଚାର ଭୟ ଅନ୍ୟ ବଡ଼ ବଡ଼ ପକ୍ଷୀଙ୍କୁ ସେଥିପାଇଁ ସେ ଦିନରେ ଲୁଚିକରି ରହେ । ପିଗିମ୍ ଅଉଲ୍ ବୋଲି ଏକ ରକମର ପେଚା ଅଛନ୍ତି ତାଙ୍କ ମୁଣ୍ଡ ପଛଆଡ଼େ ବଡ଼ ବଡ଼ ଆଖି ଭଳିଆ ଦି'ଟା ଚିହ୍ନ ଥାଏ, ତେଣୁ ସେ ନିର୍ଭୟରେ ଦିନବେଳା ଡାଳ ଉପରେ ବସିରହେ । ତାକୁ ଶିକାର କରିବା ପାଇଁ ଆସୁଥିବା ପକ୍ଷୀ ଆଗରୁ ଆସିଲେ ଦେଖେ ଦି'ଟା ଆଖି ପୁଣି ପଛକୁ ଫେରିଯାଇ ଦେଖେ ଦି'ଟା ଆଖି—କ'ଣ କରିବ ଚିନ୍ତା କରୁକରୁ ପେଚା ଚମ୍ପଟ୍ ମାରେ ।

ପେଚା କ'ଣ ଅଶୁଭ ?—ପଚାରିଲେ ପୁପୁ ଓ ଇନି ।

ଏକ୍‌ଦମ୍ ଭୁଲ୍ ଧାରଣା କହିଲେ ବାପା । ପେଚା ଯେତିକି ପୋକ, ମୂଷା ଓ ଅନ୍ୟାନ୍ୟ କ୍ଷତି କରୁଥିବା ଜୀବଜନ୍ତୁଙ୍କୁ ମାରେ ଅନ୍ୟ କେହି ସେଭଳି କରନ୍ତି ନାହିଁ । ତେଣୁ ମଣିଷର ବହୁ ଉପକାରୀ ପକ୍ଷୀ ହଉଚି ପେଚା ।

□□

## ପୁସ୍ତକ ସଂପର୍କରେ ...

ଶ୍ରୀ ବିପିନ ବିହାରୀ ମିଶ୍ରଙ୍କ ଦ୍ୱାରା ଲିଖିତ ଏହି "ବିଚିତ୍ର ଜୀବଜନ୍ତୁ" ପୁସ୍ତକଟି ଓଡ଼ିଆ ଶିଶୁ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ । କାରଣ, ଏହାର ବିଷୟବସ୍ତୁରେ ଥିବା ତଥ୍ୟ କେବଳ ଯେ ଶିଶୁମାନଙ୍କ ଲାଗି ଉଦ୍ଦିଷ୍ଟ, ତା ନୁହେଁ, ବୟସ୍କମାନଙ୍କ ଲାଗି ମଧ୍ୟ ଉଦ୍ଦିଷ୍ଟ । କିନ୍ତୁ ଏହାର ଭାଷା ଓ ଶୈଳୀ ଶିଶୁମାନଙ୍କ ମନକୁ ଛୁଇଁଲା ଭଳି ସରସ ଓ ବୋଧଗମ୍ୟ ।

ଏଥିରେ ବିଭିନ୍ନ ପକ୍ଷୀ ଓ ଜୀବଜନ୍ତୁଙ୍କ ଜୀବନଧାରା ଓ ଶୈଳୀ ବେଶ୍ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ସେମାନଙ୍କ ଜୀବନଚର୍ଯ୍ୟାକୁ ମନନଶୀଳ ଦୃଷ୍ଟିଭଙ୍ଗୀ ନେଇ ଲେଖକ ଗଭୀର ଭାବରେ ଅନୁଧ୍ୟାନ କରିଛନ୍ତି ଓ ତାକୁ ଅତି ନିଖୁଣ ଭାବରେ ପରିବେଷଣ କରିଛନ୍ତି ।

ଦେଶବିଦେଶର ପଶୁପକ୍ଷୀମାନଙ୍କର ଜୀବନଚର୍ଯ୍ୟା ଉପରେ ଲିଖିତ ଏହି ପୁସ୍ତକଟି ଦ୍ୱାରା ପାଠକ ପାଠିକାମାନେ ବହୁ ଅଜ୍ଞାତ ତଥ୍ୟ ବିଷୟରେ ଅବହିତ ହୋଇ ପାରିବେ ବୋଲି ଆଶାକରୁ ।

– ପ୍ରକାଶକ